ପାଇବ ନାହିଁ ଆଉ ଭରତ ରାଜ୍ୟଲାଭ କରିବ ତୁମେ ସେହି ଉପାୟ ମୋତେ କହ ।

ମନ୍ଥ ।—ଦେବି ! ଦକ୍ଷିଣଦେଶରେ ଦଣ୍ଡକଜନପଦ ଭିତରେ ବୈଜୟନ୍ତ ନଗରରେ ତିମିଧ୍ୱଜ ବା ଶମ୍ବର ନାମରେ ଯେ ମାୟାବୀ ଅସୁରରଜା ଥିଲା— ତୁମର ମନେ ଥିବ—ଯେତେବେଳେ ଇନ୍ଦ୍ର ଦେବତାମାନଙ୍କୁ ସଙ୍ଗେ ନେଇ ସେହି ଅସୁରସଙ୍ଗେ ଲଢ଼େଇ କରିବାକୁ ଗଲେ ସେତେବେଳେ ଇନ୍ଦ୍ରଙ୍କୁ ସାହାଯ୍ୟ କରିବା ପାଇଁ ଆନ ରଜାଙ୍କ ସଙ୍ଗେ ତୁମର ସ୍ୱାମୀ ଯୁଦ୍ଧକୁ ଯାଇଥିଲେ । ତୁମେ ବି ତାଙ୍କସଙ୍ଗେ ଯାଇଥିଲ । ଯଉଁ ଲୋକମାନେ କ୍ଷତବିକ୍ଷତ ହୋଇ ରଣରେ ଶୋଇଥିଲେ ସେମାନଙ୍କୁ ରାକ୍ଷସମାନେ ଟାଣିନେଇ ନଷ୍ଟ କଲେ । ସେହି ସମୟରେ ମହାରାଜା ତାଙ୍କ ସଙ୍ଗେ ଘୋର ଯୁଦ୍ଧ କରି ସର୍ବାଙ୍ଗ କ୍ଷତବିକ୍ଷତ ହେଇ ଅଚେତନ ହେଇ ପଡ଼ିଲେ । ତୁମେ ତାଙ୍କୁ ସେଠାରୁ ଦୂରକୁ ନେଇଯାଇ ରକ୍ଷା କରିଥିଲ ମଧ ସେଠାରେ ବି ଶତ୍ରୁମାନଙ୍କର ବାଣ ଆସି ପଡ଼ିବାରୁ ଆହୁରି ଦୂରକୁ ନେଇଯାଇ ରକ୍ଷା କରିଥିଲ । ସେତେବେଳେ ତୁମର ସ୍ୱାମୀ ତୁଷ୍ଟ ହୋଇ ତୁମକୁ ଯୋଡ଼ିଏ ବର ଦେଇଥିଲେ । ତୁମେ କହିଥିଲ କି ଯେତେବେଳେ ଇଚ୍ଛା ହେବ ତୁମେ ସେ ବର ଯୋଡ଼ିକ ମାଗି ନେବ । ତହିଁରେ ମହାରାଜା ସେୟା ହଉ ବୋଲି କହିଥିଲେ । ମୁଁ ତ ତୁମଠୁଁ ଏୟା ଶୁଣିଚି; ତୁମର କି ମନେ ନାହିଁ ?

କୈକେ ।—ହିଁ ବେଶ ମନେ ଅଛି । ମହାରାଜ ମୋତେ ଦୁଇଟି ବର ଦେବାକୁ ଅଙ୍ଗୀକାର କରିଛନ୍ତି ।

ମନ୍ଥ ।—ମନେ ଅଛି ତ; ତେବେ ଆଉ କଣ । ବୁଦ୍ଧି ଥିଲେ ବାପଘର ଝିଅ ! ବଖତବେଳେ ବେଙ୍ଗ ବାଟ ଛଡ଼େ ନାହିଁ ! ତୁମେ ସେହି ବର ମାଗି ସ୍ୱାମୀଙ୍କୁ ଶାସନ କରି ରାମର ଅଭିଷେକ ବନ୍ଦ କର । ତୁମେ ଗୋଟିଏ ବରରେ ରାମର ଚଉଦବର୍ଷ ବନବାସ ଆଉ ବରଟିରେ ଭରତର ଯୌବରାଜ୍ୟରେ ଅଭିଷେକ ମାଗିନିଅ । ରାମ ଚଉଦବର୍ଷ ବନକୁ ଗଲେ ତୁମର ପୁଅ ପ୍ରଜାମାନଙ୍କର ପ୍ରୀତିଭାଜନ ହେଇ ରାଜ୍ୟରେ ଅଟଳ ହୋଇ ରହିବ ।—ତୁମେ ଅଭିମାନ କରି ମଇଲାଲୁଗା ପିନ୍ଧି ଭୂଇଁରେ ଶୋଇ ରହ । ରଜା ଆସିଲେ ତାଙ୍କୁ ଅନେଇବ ନାହିଁ କି କଥା କହିବ ନାହିଁ — ଖାଲି କାନ୍ଦି କୋବେଇ ଭୂଇଁରେ ଗଡ଼ିବ ।

କୈକେ ।—କୁବୁଜେ ! ହଁ୍ୟା କଲେ କି ମହାରାଜ ମୋତେ ସେପରି ବର

ଦେବେ ? ମହାରାଜ ରାମଙ୍କୁ ଜୀବନରୁ ଅଧିକ ଦେଖି ପାରନ୍ତି—ସେ କ ତାଙ୍କୁ ଛାଡ଼ିବେ ନା ତାଙ୍କୁ ଛାଡ଼ି ଭରତଙ୍କୁ ରାଜା କରିବେ ?

ମନ୍ଥ ।—ଏ କଣ, ହାତେ ଧରି—ଦର୍ପଣେ ଦେଖ ! ତୁମର ସୌଭାଗ୍ୟ କ ଅଳ୍ପ ? ନ ଜାଣିଲାପରି କହୁଛ ନାହିଁକି ? ମହାରାଜ ତୁମପାଇଁ ନର୍କରେ ପଶି ପାରନ୍ତି; ତୁମର ପ୍ରିୟ କରିବାପାଇଁ ପ୍ରାଣ ଦେଇ ପାରନ୍ତି । ତୁମର ଯହିଁରେ କ୍ରୋଧ ହବ ସେ ତା କେବେ କରିବେ ନାହିଁ । ତୁମର କ୍ରୋଧ ହୋଇଥିଲେ ସେ କଷ୍ଟେ ତାହା ଫେଡ଼ିବାକୁ ଯତ୍ନ କରିବେ । ତୁମେ ଯେ ମରୁଥିଲେ ତାଙ୍କର ପ୍ରିୟତମା ଏଥିରେ କ କିଛି ସନ୍ଦେହ ଅଛି ? ମୋତେ ବେଶ ଦିଶୁଛି ସେ ତୁମ କଥା କେବେ ଠେଲି ପାରିବେ ନାହିଁ । ସେ ତୁମକୁ ସୁନା, ରୁପା, ମଣି, ମୁକ୍ତା, ରତ୍ନ ଦେବାକୁ ଚାହିଁବେ । ତୁମେ କେବେ ତା ନେବାକୁ ମନ ବଳାଇବ ନାହିଁ । ଦେବାସୁରଯୁଦ୍ଧରେ ରାଜା ଯେଉଁ ଦୁଇଟି ବର ତୁମକୁ ଦେବାକୁ କହିଥିଲେ ତୁମେ ଖାଲି ତାଙ୍କୁ ସେହି ଦୁଇଟି ବର ସ୍ମରଣ କରାଇବ । ଦେଖ ଯେମିତି ଆପଣା କାର୍ଯ୍ୟ ଭୁଲି ନ ଯାଅ । ଯେତେବେଳେ ମହାରାଜ ତୁମକୁ ଉଠାଇ ବର ଦେବାକୁ ଚାହିଁବେ ସେତେବେଳେ ତୁମେ ସେହି ଯୋଡ଼ିଏ ବର ମାଗି ନବ । ମହାରାଜା ବର୍ତ୍ତମାନ ତୁମ ହାତରେ ଗୁଡ଼ ଦେଇ ତଣ୍ଟିରେ କ୍ଷୁର ଦେବାକୁ ବସିଛନ୍ତି । ତୁମେ ଯେବେ ତାଙ୍କ ଆଦରରେ ଭୋଳ ହୋଇ ରହିବ ତେବେ ଯା କହନ୍ତି ମୂଳରୁ ସେସବୁ ମାନି ନେଲ, ଆପଣା ସେତକ ହାନି କଲ !—ସେମ୍ଭା ହବ । ରାମ ଚଉଦବର୍ଷ ବନକୁ ଗଲେ ଭରତ ଅମାତ୍ୟ ସୈନ୍ୟ ସାମନ୍ତ ସମସ୍ତଙ୍କୁ ବଶ କରି ସୁଖରେ ରାଜ୍ୟଭୋଗ କରିବ ଆଉ ସେ ବନରୁ ଫେରିଲା ବେଳକୁ ଭରତ ପ୍ରଜାଙ୍କୁ କଲମରେ ପାଇ ତାଙ୍କର ସ୍ନେହଭାଜନ ହୋଇ ରାଜ୍ୟରେ ବଳେ ବସି ଯାଇଥିବ । ଯାହା କରିଥିବ ଏତିକବେଳେ । ବୋଲେ—ସକଳ ଯାଉ, ମହତ୍ତ୍ୱ ଥାଉ, ମହତ୍ତ୍ୱ ଗଲେ ନ ଆସଇ ଆଉ !

କୈକେ ।—କୁବୁଜେ ? ପୃଥିବୀରେ ଯେତେ କୁବୁଜା ଅଛନ୍ତି ତୁମେ ସବୁଙ୍କଠୁଁ ଭଲ ! ତୁମର କର୍ତ୍ତବ୍ୟାକର୍ତ୍ତବ୍ୟ ଜ୍ଞାନକୁ ଧନ୍ୟ ! ତୁମେ ଯାହା କହିଲ ଯହିଁରେ ମୋର ମଙ୍ଗଳ ହେବ, ମୁଁ ତାହା କେବେ ବେଟି ଦେବ ନାହିଁ । ତୁମେ ଥିଲ ବୋଲି ମୁଁ ରାଜାଙ୍କ କାଣ୍ଡ ସବୁ ଜାଣି ପାରିଲି । ନୋହିଲେ ରାଜା ମୋ କଥା ସାରି ଦେଇଥିଲେ !

ମନ୍ଥ ।—ସ୍ତ୍ରୀ ଆଉ କହିବାକୁ ଅଛି । କଥାରେ କହନ୍ତି, ସବୁଦିନେ ନାହିଁ ଶାଶୁ-ପୀରତି—ସବୁ ଦିନେ ନାହିଁ ଗୃହିଣୀପଣ !—ରାଜାମାନଙ୍କୁ କି ବିଶ୍ୱାସ ଅଛି ?

କୈକେ ।—ତୁମକୁ ଆଉ ମୁଁ କି ପୁରସ୍କାର ଦେବି ? ମନ୍ଥରେ ! ତୁମପରି ସୁନ୍ଦରୀ ରମଣୀ ମୁଁ ଦେଖି ନାହିଁ । ତୁମର ମୁହଁ, ତୁମର ଗଳା, ତୁମର ଦେହ, ତୁମର ଭଙ୍ଗୀ କି ସୁନ୍ଦର ! ତୁମେ ଯେତେବେଳେ ପାଟଲୁଗା ପିନ୍ଧି ମୋ-ଆଗେ ଆଗେ ଚାଲୁଥାଅ ସେତେବେଳେ ତୁମର ଯେ ଶୋଭା ତା ମୁହଁ-ରେ କହିବାର ନୁହେ ! ଆହା ! ସବୁଠୁଁ ତୁମର କୁଜର ଶୋଭା ଅଛି ଅଧିକ ! ତାର ଆଉ ପଟାନ୍ତର ନାହିଁ ! ଯେତେ କ୍ଷତ୍ରବିଦ୍ୟା, ଯେତେ ମାୟା, ଯେତେ ବୁଦ୍ଧି ସବୁ ସେହି କୁଜରେ ଭର୍ତ୍ତି ହୋଇଛି । ଯେଉଁଦିନ ରାମ ବଣକୁ ଯିବ ଆଉ ଭରତର ଅଭିଷେକ ହେବ ମୁଁ ସେହି ଦିନ ତୁମର ସେହି କୁଜରେ ସୁନାର ହାର ପିନ୍ଧାଇ ଦେବି । ମୋର ମନୋରଥ ସଫଳ ହେଲେ ତୁମର କୁଜରେ ସୁବର୍ଣ୍ଣ ମଣ୍ଡାଇ ଦେଇ ନାନା ପ୍ରକାର ଅଳଙ୍କାର ଓ ମୁହଁକୁ ଗୋଟିଏ ସୁନାର ତିଳକ ଦେବି । ତୁମେ ତାହା ନାଇ ଦେବତାଙ୍କ ପ୍ରାୟ ଚାଲବୁଲ କରିବ । ଅଧିକ କି କହିବ କୁବୁଜେ ! ତୁମେ ଯେପରି ମୋର ପଦସେବା କରୁଛ ସେହପରି ଅନେକ କୁବୁଜା ନାନା ଅଳଙ୍କାରମାନ ନାଇ ତୁମର ଚରଣସେବା କରିବେ ।

ମନ୍ଥ ।—ଦେବି ! ତୁମେ ଆଉ ଭରତ ବଞ୍ଚିଥିଲେ ମୋର କଉଁ କଥାକୁ ଭାବନା ଅଛି ? ଆପ—ଆଉ ସମୟ ନାହିଁ । ଶୀଘ୍ର ପଳେଇଲେ ପରେ ଶୁଦ-ଦେଇ କି ହେବ ?—ଆସ ମୁଁ ତୁମର ଅଳଙ୍କାରମାନ କାଢ଼ି ଦିଏଁ ।—(କୈକେୟୀଙ୍କର ଅଳଙ୍କାର ସମସ୍ତ ମୋଚନ କରି ନିକଟରେ ପ୍ରକ୍ଷେ-ପଣ ପୂର୍ବକ ମୁଣ୍ଡର ବାଳ ଫିଟାଇ ଓ ମଇଳାଲୁଗା ପିନ୍ଧାଇ ଦେଇ ତଳକୁ ଉଠାଇ ଦେଇ) ଏଇଠି ଭୂଇଁରେ ଶୁଅ ।—ଦେଖ ମୋ କଥା ଭୁଲିବ ନାହିଁଟି ।

କୈକେ ।—କୁବୁଜେ ? ମୋ ଦେହ ଦଣ୍ଡରେ ଜରିଗଲା ପରି ହେଉଛି । ମୋର ସ୍ୱବର୍ଣ୍ଣ, ରତ୍ନ, ଖାଦ୍ୟ କାହିଁରେ ଅଭିଳାଷ ନାହିଁ । ରାମ ରାଜ୍ୟଲାଭ କଲେ ମୋର ନିଶ୍ଚୟ ମରଣହେବ । ମୁଁ ଏଇଠି ଶୋଇଲି—ଯେବେ ରାମ ବଣକୁ ନ ଯାଏ କି ଭରତ ରାଜା ନ ହୁଏ ତେବେ ତୁମେ ତୁମର ମହାରାଜଙ୍କୁ ମୋର ମୃତ୍ୟୁବାର୍ତ୍ତା ଜଣେଇ ଦବ । ( ଭୂମିରେ ଶୟନ । )

ମନ୍ଥ ।—ମୁଁ ତେବେ ଯାଉଛି—ବୁଦ୍ଧି ଥିଲେ ନଷ୍ଟନାରୀ କି ସତୀ ହୋଇ ଉଚ୍ଚା-ଦର୍ଶ; ନଷ୍ଟନାରୀର ଶ୍ରେଷ୍ଠ ଗୁଣ—ବୁଦ୍ଧି ଗୁଣେ ହୁଏ ସତୀ । ମୁଁ ଯାହା

କହିଚ ବରଦ୍ୱୟ ମନେ ରଖିଥିବ । ଦେଇ ରାଜା ଅନ୍ତଃପୁର ପଥେ ( କୈକେୟୀ କ୍ରୋଧାଳୟକୁ ଗମନ । )

[ ରାଜାଙ୍କର ପ୍ରବେଶ ।

ରାଜା ।—( ସବିସ୍ମୟେ ) କାହିଁକି ! ଦେବି ଆଜ ଏପରି ବେଶରେ ପଡ଼ିଛନ୍ତି କାହିଁକି ! କି ବିଷୟରେ ଏଡ଼େ ଅପମାନ ମନେ କରିଛନ୍ତି ! ( ନିକଟରେ ବସି ) ଦେବି ! ତୁମ୍ଭର କ୍ରୋଧ ହୋଇ ପାରେ ଏପରି କୌଣସି କାର୍ଯ୍ୟତ କରି ନାହିଁ । କେହି ତୁମ୍ଭଙ୍କୁ ପରାସ୍ତ ବା ନିନ୍ଦା କରିଛି ସେଥିପାଇଁ ତୁମ୍ଭେ ମୋତେ ଦୁଃଖ ଦେବା ଅଭିଳାଷରେ ଧୂଳିରେ ଶୋଇଛ ? ମୁଁ ତ ସର୍ବଦା ତୁମ୍ଭର ପ୍ରିୟସାଧନରେ ଯତ୍ନବାନ ଅଛି, ତେବେ କାହିଁକି ତୁମ୍ଭେ ଭୂତ ଲାଗିଲାପରି ଏପରି ହୋଇ ଭୂଇଁରେ ଶୋଇଛ ? ଏସବୁ ଦେଖି ମୋର ମନ ଦହ ହୋଇ ଯାଉଛି । ତୁମ୍ଭର ଯେବେ କୌଣସି ବ୍ୟାଧି ହୋଇଥାଏ କହ ମୁଁ ସବୁଠୁଁ ବଡ଼ ବୈଦ୍ୟଙ୍କ ଆଣି ତୁମ୍ଭଙ୍କୁ ଭଲ କରିବି । ମୁଁ ଆଉ ମୋର ଯାହା ଅଛି ସବୁ ତୁମ୍ଭରି । ମୋହର ଜୀବନ ବଞ୍ଚାଇବା ପାଇଁ ବି ତୁମ୍ଭର ଅଭିଳାଷରେ ବାଧା ଦେବାକୁ ମୁଁ ନ ଇଚ୍ଛେ ।

କୈକେ ।—( ଭୂମିରେ ଶୋଇ ଥାଇ ନାଗିନୀପ୍ରାୟ ଫୁତ୍କାରିବାର । )

ରାଜା ।—ଜାଣ ନାହିଁ—ଅନାହାରରେ ଶରୀର କ୍ଷୀଣ କର ନାହିଁ—ତୁମ୍ଭର କିଏ ଭଲ କରିଛି କହ ମୁଁ ତାହାର ଭଲକରିବି—କେହି ତୁମ୍ଭର ମନ୍ଦ କରିଛି ତ କହ ମୁଁ ତାର ମନ୍ଦ କରିବି । ନିର୍ଦ୍ଧନକୁ ଧନବାନ୍ ଓ ଧନବାନକୁ ନିର୍ଦ୍ଧନ—ଅବଧ୍ୟକୁ ବଧ ଓ ବଧ୍ୟକୁ ପ୍ରାଣଦାନ କରିବାକୁ ହେବ କହ । ମୁଁ ତୁମ୍ଭର ପ୍ରଣୟାଧୀନ—ତହିଁରେ ପୁଣି ମୁଁ ଧର୍ମତଃ ପ୍ରତିଜ୍ଞା କରି କହୁଛି, ତୁମ୍ଭେ ଡର ନାହିଁ, କହ । ଦେଖ ! ସୂର୍ଯ୍ୟ ଯେତେଦୂର ପ୍ରକାଶ କରିଥାନ୍ତି ସେତେଦୂର ପର୍ଯ୍ୟନ୍ତ ମୋର ପୃଥିବୀରେ ଅଧିକାର ଅଛି—ଦ୍ରାବିଡ଼, ସିନ୍ଧୁ, ସୌବୀର, କୋଶଳ, କାଶୀ, ସୌରାଷ୍ଟ୍ର, ମତ୍ସ୍ୟ, ବଙ୍ଗ, ଅଙ୍ଗ, ମାଗଧ ଏବଂ ଦକ୍ଷିଣରାଜ୍ୟ ପ୍ରଭୃତି ସମୁଦାୟ ରାଜ୍ୟ ମୋର ଅଧୀନ । ତହିଁରେ ଧନ, ଧାନ୍ୟ, ନାନାବିଧ ଦ୍ରବ୍ୟ ଜନ୍ମଇ । ତହିଁ ମଧ୍ୟରୁ ଯାହା ଇଚ୍ଛା ହେବ ମୁଁ ଦେବି । ନାହିଁ ଯଦି ତୁମ୍ଭର କୌଣସି ଭୟଜାତ ହୋଇଥାଏ ତ କହ ମୁଁ ଏହିକ୍ଷଣି ସୂର୍ଯ୍ୟଦେବ ଅନ୍ଧକାର ନାଶ କଲାପ୍ରାୟ ସେ ଭୟ ଛେଦନ କରିବି ।

କୈକେ ।—( କରୁଣ ଗର୍ବିତ ସ୍ୱରେ ) ଆର୍ଯ୍ୟପୁତ୍ର ! ମୋତେ କେହି ଅପମାନ କି ନିନ୍ଦା କରି ନାହିଁ—ମୋର ଗୋଟିଏ ଅଭିପ୍ରାୟ ଅଛି ସେ ଅଭିପ୍ରାୟ

ତୁମେ ସଫଳ କରିବ ପ୍ରତିଜ୍ଞା କର, ନୋହିଲେ କୈକେୟୀ ଏଠାରୁ ମଲାବୋଲି ଜାଣିବ ।

ରାଜା ।—(ହସିଉଠି କୈକେୟୀର ମୁଣ୍ଡରେ ହାତ ଦେଇ ଉଠାଉ) ତୁମର କି ଜ୍ଞାନ ହଜିଯାଇଛି । ଦେବି ! ରାମଛଡ଼ା ତୁମ୍ଭଠୁଁ ଆଉ ମୋର କେହି ପ୍ରିୟ ନାହିଁ, ଏହା କି ତୁମ୍ଭେ ନ ଜାଣ ? ମୁଁ ମୋର ଜୀବନଧନ ରାମର ରାଣ ପକାଇ କହୁଛି ତୁମ୍ଭେ ଯାହା କହିବ କରିବି । ମୁଁ ଅନ୍ୟ ପୁତ୍ରମାନଙ୍କଠାରୁ— ଆପଣାଠାରୁ ରାମକୁ ଅଧିକ କରି ମଣେ, ରାମକୁ ମୁହୂର୍ତ୍ତେ ନ ଦେଖିଲେ ମୋର ପ୍ରାଣ ବିକଳ ହୁଏ, ମୁଁ ସେହି ରାମର ରାଣ ପକାଇ କହୁଛି ତୁମ୍ଭେ ଯାହା କହିବ କରିବି । ତୁମର ପ୍ରିୟକାର୍ଯ୍ୟ କରିବାପାଇଁ ମୁଁ ଏକାନ୍ତ ଉତ୍ସୁକ ହୋଉଛି—ଉଠ—ମୋତେ ରକ୍ଷା କର—ମୁଁ ତୁମର ପ୍ରଣୟର ନିତାନ୍ତ ଅଧୀନ—ଡର ନାହିଁ । ମୁଁ ଧର୍ମକୁ ସାକ୍ଷୀ ରଖି କହୁଛି ନିଶ୍ଚୟ ତୁମର ପ୍ରିୟକାର୍ଯ୍ୟ କରିବି—ତୁମର ଅଭିପ୍ରାୟ କି କହ ।

କୈକେୟୀ ।—(ଉଠି ବସି) ମହାରାଜ ! ତୁମେ ପୁଣି ଆଉ ଧର୍ମଦ୍ୱାରା ମୋର ମାନସ ପୂରଣ କରିବ ବୋଲି ଯେ ରାଣ ପକେଇଲ ଏହା ତେତିଶକୋଟି ଦେବତା ଶୁଣି ଥାଆନ୍ତୁ । ଚନ୍ଦ୍ର, ସୂର୍ଯ୍ୟ, ଗ୍ରହ, ଆକାଶମଣ୍ଡଳ, ଦିବା, ରଜନୀ, ଦିକ୍, ଗନ୍ଧର୍ବ, ରାକ୍ଷସ, ପୃଥିବୀ, ଜଗତ, ଗୃହଦେବତା, ଜଳଚରପ୍ରାଣୀ ଓ ଅନ୍ୟାନ୍ୟ ଜୀବମାନେ ଜାଣନ୍ତୁ । ହେ ଦେବତାମାନେ ! ଏହି ସତ୍ୟନିଷ୍ଠ, ସତ୍ୟବାଦୀ, ଧର୍ମଜ୍ଞ, ପବିତ୍ରସ୍ୱଭାବ, ମହାତେଜସ୍ୱୀ ମହୀପତି ମତେ ବାଞ୍ଛିତ ବର ଦେବାକୁ ଉଦ୍ୟତ ହେଉଛନ୍ତି, ଆପଣମାନେ ସମସ୍ତେ ଶୁଣିଥାଆନ୍ତୁ ।

ରାଜା ।—ପ୍ରିୟେ ! ସ୍ୱର୍ଗ-ମର୍ତ୍ତ୍ୟ-ପାତାଳରେ ଏମନ୍ତ କିଛି ନାହିଁ ଯାହା କି ଦଶରଥ ରାଜା ପାଇ ନ ପାରିବ । ଯେବେ ତୁମ୍ଭଙ୍କୁ ସୁଖୀ କରିବାପାଇଁ ଇନ୍ଦ୍ର, ଚନ୍ଦ୍ର, ବରୁଣ ସଙ୍ଗରେ ସୂର୍ଯ୍ୟ, ବ୍ରହ୍ମା, ଅଗ୍ନି ସଙ୍ଗରେ ଯୁଦ୍ଧ କରିବାକୁ ହୁଏ ତଥାପି ତାହା କରିବାକୁ ମଧ୍ୟ ପ୍ରସ୍ତୁତ ଅଛି । ପୃଥ୍ୱୀ ପ୍ରଳୟ ହୋଇ ପାରେ ମାତ୍ର ଦଶରଥର ପ୍ରତିଜ୍ଞା ଟଳିବାର ନୁହଇ ।

କୈକେୟୀ ।—(ବିନୟ ଓ କାତରସ୍ୱରରେ) ମହାରାଜ ! ପୂର୍ବେ ଦେବାସୁର ଯୁଦ୍ଧରେ ରାତ୍ରରେ ଯାହା ଘଟିଥିଲା ତାହା ମନେ କର । ଯେତେବେଳେ ଶମ୍ବର ଅସୁରର ବାଣରେ ଆହତ ହୋଇ କେବଳ ତୁମର ପ୍ରାଣମାତ୍ର ଅବଶେଷ ଥିଲା ତେତେବେଳେ ମୋର ସେବାରେ ସନ୍ତୁଷ୍ଟ ହୋଇ ମୋତେ ଯୋଡ଼ିଏ ବର ଦେଇଥିଲ । ମୁଁ ସେ ବର ନ ନେଇ ତୁମର ନିକଟରେ ରଖେଇଛି । ତୁମେ ଧର୍ମସାକ୍ଷୀ କରି ମୋତେ ସେହି ବର ଦେବାକୁ ପ୍ରତି

କରିଥିଲ ବର୍ତ୍ତମାନ ଯେବେ ସେ ବର ନ ଦେବ ମୁଁ ଏହିକ୍ଷଣି ଜୀବନ ଛାଡ଼ିବ ।

ରାଜା ।—ସେ ବରତ ମୁଁ ଦେଇଛି,—ତା ନାହିଁ ତ ତା ଉପରୁ ଆଉ ଯାହା ମାଗିବ ତାହା ଦେବ ।—ପ୍ରିୟେ ! ତେବେ ମୁଁ ଏହିକ୍ଷଣି ବର ଦେଇ ଋଣରୁ ମୁକ୍ତ ହେବ ।

କୈକେୟୀ ।—ମହାରାଜ ! ରାମର ଅଭିଷେକ ପାଇଁ ଯେ ଆୟୋଜନ ହେଉଛି ତହିଁରେ ଭରତଙ୍କୁ ଯୌବରାଜ୍ୟରେ ଅଭିଷେକ କର—ଏ ଗୋଟିଏ ବର । ଆଉ ଗୋଟିଏ ବର—ଐଶ୍ୱର୍ଯ୍ୟସମ୍ପନ୍ନ ରାମଚନ୍ଦ୍ର କୌପୀନ ଓ ଚର୍ମ ପିନ୍ଧି ଦଣ୍ଡକାରଣ୍ୟରେ ଚୌଦବର୍ଷ ବନବାସ କରନ୍ତୁ ।—ତୁମେ ଅଙ୍ଗୀକାର କରିଥିଲ ମୁଁ ପ୍ରାର୍ଥନା କଲି । ମୁନିମାନେ କହନ୍ତି ସତ୍ୟକଥା ଲୋକଙ୍କର ପରକାଳକୁ ହିତକର ହୁଏ । ତୁମେ ସତ୍ୟପ୍ରତିଜ୍ଞ ହୋଇ କୁଳ, ଶୀଳ ଓ ଜନ୍ମ ସାର୍ଥକ କର ।

ରାଜା ।—( ସ୍ୱଗତ ପାଗଳପ୍ରାୟ ) ମୁଁ କଣ ଶୁଣିଲି—ମୋର ମୁଣ୍ଡ କାହିଁକି ଭ୍ରମି ଯାଉଛି—ମୋତେ କି ଭୂତ ଲାଗିଲା !—( ପତନ ଓ ମୂର୍ଚ୍ଛା । )

( ମନ୍ତ୍ରୀଙ୍କର ଦ୍ରୁତ ଜଳପାତ୍ରହସ୍ତେ ପ୍ରବେଶ ।

ମନ୍ତ୍ରୀ ।—ଦେବି ! ଦେଖୁଛ କିସ ? ଖୁବ କହିଲ ! ନିଅ, ପାଣି ଦେଇ ମହାରାଜଙ୍କୁ ସାନ୍ତ୍ୱନା କର ।—ମୁଁ ମନେ କରିଥିଲି ତୁମେ କହି ପାରିବ ନାହିଁ ।

କୈକେୟୀ ।—ମୁଁ ଭୁଲିବି ?—ମୋର ତ ସବୁ ସରିଥିଲା ! ( ଜଳ ନେଇ ଦଶରଥଙ୍କ ମୁଖରେ ଦେବାର । )

ମନ୍ତ୍ରୀ ।—କୌଶଲ୍ୟାର ପୁଅକୁ ରଜା କରିବେ ଆଉ କୈକେୟୀ କେହି ନୁହେ ।—ହୃଦପଦ୍ମରେ ଥାଉ କି ନ ଥାଉ ଠିଆ କାଟିଥାଏ ତତା—ବାହ୍ୟପତ୍ରଅଟ୍ଟେ ମୂର୍ତ୍ତିକାଇଗଣ ଚାଲୁ କରିଥାଏ ନିତା !—ତାର ପରାଭବ ଏବେ ପାଞ୍ଚି ।—ମୁଁ ଯାଉଛି—ଦେଖି କଥା ଫେରେଇବ ନାହିଁ ତ ।— [ ପ୍ରସ୍ଥାନ ।

ରାଜା ।—( କଥଞ୍ଚିତ୍ ସଂଜ୍ଞାଲାଭ କରି ବିକଳସ୍ୱରେ ) ରେ ଦୁଷ୍ଟା ! ରାମ ତୋର କି ଅପରାଧ କରିଛି—ମୁଁ ତୋର କି ଅପରାଧ କରିଛି ଯେ ତୁ ସର୍ବନାଶ କରିବାକୁ ବସିଛୁ । ରାମ ତୋଠାରେ ଆପଣା ମା ପରି ବ୍ୟବହାର କରେ ତୁ ତାର ଅନର୍ଥ କରିବାକୁ ବସିଛୁ ! ତୁ ରାଜକନ୍ୟା ନୋହୁ—ତୁ କାଳସର୍ପିଣୀ—ସମସ୍ତେ ଯାହାର ପ୍ରଶଂସା କରନ୍ତି ମୁଁ ସେହି ନିରପରାଧୀ ରାମଚନ୍ଦ୍ରଙ୍କ କିରୂପେ ପରିତ୍ୟାଗ କରିବି ? ମୁଁ କୌଶଲ୍ୟା, ସୁମିତ୍ରା, ଏମନ୍ତ କି ରାଜଲକ୍ଷ୍ମୀଙ୍କି ତ୍ୟାଗ କରିପାରେଁ—ମୁଁ ମୋର ଜୀବନ ତ୍ୟାଗ କରିପାରେଁ—

ମାତ୍ର ପିତୃବତ୍ସଳ ରାମଙ୍କୁ ମୁଁ ତ୍ୟାଗ କରି ପାରିବି ନାହିଁ ! ତାଙ୍କୁ ନ ଦେଖିଲେ ମୋର ଜୀବନ ଯିବ । ସୂର୍ଯ୍ୟବିନା ଲୋକେ ବଞ୍ଚି ପାରନ୍ତି, ଜଳ ବିନା ଧାନଗଛ ବଞ୍ଚି ପାରେ, ରାମବିନା ମୁଁ ଭଲେ ବଞ୍ଚି ପାରିବି ନାହିଁ । ରେ ପାପିଷ୍ଠେ ! ମୁଁ ତୋର ଗୋଡ଼ତଳେ ପଡ଼ୁଛି—ମୋପ୍ରତି ପ୍ରସନ୍ନ ହୋ—ତୁ ଏ ମନ୍ଦଅଭିଳାଷ ତ୍ୟାଗ କର । ଭରତ ମୋର ପ୍ରିୟ କି ନା ଏହା ଯେବେ ତୋର ଜାଣିବାକୁ ବାଞ୍ଛା ଥାଏ ତେବେ ଭରତପାଇଁ ଯେ ବର ମାଗିଲୁ ତାହା ପଛକେ ହେଉ ।—ମୁଁ ଜାଣିଲି ମୋତେ ଛଳେଇବାପାଇଁ ତୁ ଆଗେ ଧର୍ମଶ୍ରେଷ୍ଠ ଲକ୍ଷ୍ମୀପ୍ରଗୁଣ ରାମ ମୋର ଜ୍ୟେଷ୍ଠପୁତ୍ର ବୋଲି ମୋତେ କହୁ-ଥିଲୁ, ତୋହଲେ ରାମର ଅଭିଷେକବାର୍ତ୍ତା ଶୁଣି ତୁ କି ଏଡ଼େ ସନ୍ତାପ ପାଉନ୍ତୁ ?—ହେବ ! ତୁମ୍ଭେ ନୀଚ ଜାତି ସୁଦ୍ଧା ଇକ୍ଷ୍ୱାକୁକୁଳରେ ଏ ମହତ ଅନୀତ ସଞ୍ଚାରିଛ ନାହିଁ କି ?—ତୁମ୍ଭର ଚିତ୍ତବିକାର ହୋଇଛି—ତୁମ୍ଭେ କେବେ ମୋର ଅପ୍ରିୟ କର ନାହିଁ, ଏହା ପରେ ଥିବାରୁ ବିସ୍ମୟ ତୁମ୍ଭଙ୍କୁ ଭୂତ ଲାଗିଛି । ତୁମ୍ଭେ କେତେଥର ମୋତେ କହିଛ ମହାତ୍ମା ଭରତ ତୁମ୍ଭର ଯେପରି ରାମ ବି ତୁମ୍ଭର ସେହିପରି—ଆଜି—କିପରି ସେହି ରାମର ଚତୁର୍ଦ୍ଦଶ ବନବାସ ଅଭିଳାଷ କଲ ? ମୋର ଭରତ ଯେମନ୍ତ ରାମ ବି ତେମନ୍ତ । ଭରତଠାରୁ ରାମ ତୁମ୍ଭଙ୍କୁ ଊଣା ଭକ୍ତି ବା ସେବା କରେ । କୌଣସି ରମଣୀ, କୌଣସି ଭୃତ୍ୟ କେହି ରାମର ନିନ୍ଦା କରେ ନାହିଁ, ସେ ସମସ୍ତଙ୍କୁ କିଣି ନେଇଛି । ସେ ବ୍ରାହ୍ମଣଙ୍କୁ ଦାନରେ, ଗୁରୁଙ୍କୁ ଶୁଶ୍ରୂଷାରେ, ଶତ୍ରୁଙ୍କୁ ଯୁଦ୍ଧରେ ଆଉ ସମସ୍ତଙ୍କୁ ସଦ୍ଗୁଣରେ ଆୟତ୍ତ କରିଛି । ତାଠାରେ ସତ୍ୟ, ତପସ୍ୟା, ନର୍ଦ୍ଧାର, ମିତ୍ରତା, ଶୌଚ, ଋଜୁତା, ବିଦ୍ୟା ଓ ଗୁରୁଶୁଶ୍ରୂଷା ନିତ୍ୟ ବର୍ତ୍ତମାନ । ଦେବତାପ୍ରାୟ ସେହି ରାମଚନ୍ଦ୍ର ପ୍ରତି ତୁମ୍ଭେ କିପରି ପାପାଚରଣ କରିବାକୁ ବସିଲ ! ସେ ସମସ୍ତଙ୍କୁ ପ୍ରିୟବାକ୍ୟ କହେ କେବେ କାହାକୁ ଅପ୍ରିୟ କହେ ନାହିଁ, ଏଭଳି ରାମ ବିନା ମୋର କି ଗତି ହେବ ! କୈକେୟି ! ମୁଁ ବୁଢ଼ା ହୋଇଗଲିଣି—ମୋର ଚରମଦଶା ଉପସ୍ଥିତ—ମୁଁ ମାଗି ନେଉଛି ତୁମ୍ଭେ ରାମଙ୍କୁ ଦୟା କର । ମୁଁ ତୁମ୍ଭଙ୍କୁ ପୃଥିବୀର ସବୁ ଦେଉଛି—ମୋତେ ଆଉ ମାରପକାଅ ନାହିଁ । ମୁଁ ତୁମ୍ଭଙ୍କୁ ହାତ ଯୋଡ଼ୁଛି—ମୁଁ ତୁମ୍ଭର ଗୋଡ଼ ଧରୁଛି—ତୁମ୍ଭେ ରାମଙ୍କୁ ଆଶ୍ରୟ ଦିଅ । ମୋତେ ଯେପରି ଅଧର୍ମ ସ୍ପର୍ଶ କରି ନ ପାରେ—ତୁମ୍ଭେ ଏ ବାସନା ପରିତ୍ୟାଗ କର—

ତାହା ହେଲେ ମୋତେ ପ୍ରତିଜ୍ଞାଲଙ୍ଘନ କରି ଅଧର୍ମଭାଗୀ ହେବାକୁ ହେବ ନାହିଁ !

କୈକେ ।—ତୁମେ ବର ଦେବାକୁ ଅଙ୍ଗୀକାର କରି ଦେବା ବେଳକୁ ଏପରି ଅନୁତାପ କରୁଚ—ତୁମେ ଆଉ କି ଧାର୍ମିକ ? ଯେତେବେଳେ ରାଜାମାନେ ମୋ କଥା ପଚାରିବେ ତେତେବେଳେ ତୁମେ କଣ କହିବ ? ଯେ ତୁମକୁ ରକ୍ଷା କରିଥିଲା, ଯାହାପାଇଁ ତୁମେ ବଞ୍ଚିଚ ସେହି କୈକେୟୀଠାରେ ଯାହା ପ୍ରତିଜ୍ଞା କରିଥିଲ ତାହା ପାଳି ନାହିଁ ଏହା କହି ପାରିବ କି ? ଶିବି ରାଜା, ପ୍ରତିଜ୍ଞା ରକ୍ଷା କରିବାପାଇଁ ଶ୍ୟେନପକ୍ଷିକୁ ଆପଣା ମାଂସ ଦେଇଥିଲେ; ଅଲର୍କ ରାଜା ପ୍ରତିଜ୍ଞା ରକ୍ଷା କରିବାପାଇଁ ଆପଣାର ଦର୍ଶନ ଅକ୍ଷି ବ୍ରାହ୍ମଣକୁ ଦେଇ ଉତ୍ତମଗତି ଲାଭ କରିଅଛନ୍ତି । ସାଗର ବେଳା ଲଙ୍ଘନ କରିବ ନାହିଁ ବୋଲି ପ୍ରତିଜ୍ଞା କରି ଅଦ୍ୟାପି ତାହା ପାଳୁଚି । ଏସବୁ ମନେ କରି ତୁମେ ପ୍ରତିଜ୍ଞା ଲଙ୍ଘନ ନ କର । ତୁମେ ସତ୍ୟଧର୍ମ ଛାଡ଼ି ରାମକୁ ଅଭିଷେକ କରି କୌଶଲ୍ୟା ସଙ୍ଗେ ବାସ କରିବାର ଇଚ୍ଛା କରିଚ । ତୁମେ ମୋତେ ଯାହା ଦେବାପାଇଁ ପ୍ରତିଜ୍ଞା କରିଚ ତାହା ଧର୍ମ ହେଉ, ଅଧର୍ମ ହେଉ, ସତ୍ୟ ହେଉ ବା ଅସତ୍ୟ ହେଉ ଆନ ହେବ ନାହିଁ । ରାମ ରାଜ୍ୟରେ ଅଭିଷିକ୍ତ ହେଲେ ମୁଁ ତୁମରି ଆଗରେ ବିଷପାନ କରି ମରିବି । ମୁଁ ଦିନେ ଯେବେ ରାମର ମାକୁ ସମସ୍ତ ଲୋକେ ନମସ୍କାର କରୁଛନ୍ତି ଦେଖିବି ତେବେ ମୁଁ ସେହିକ୍ଷଣି ଝୁରି ଝୁରି ମରିବି । ମହାରାଜ ! ମୁଁ ଭରତର ରାଣ ପକାଇ କହୁଚି ରାମର ବନବାସ ଛଡ଼ା ମୋର କାହିଁରେ ସନ୍ତୋଷ ନାହିଁ ।

ଦଶ ।—( କପାଳରେ କରାଘାତ କରି ) ହା ରାମ ! ମୁଁ କାହିଁକି ବର ଦେବାକୁ ଅଙ୍ଗୀକାର କରିଥିଲି ! ପ୍ରିୟେ ! କିଏ ତୁମ୍ଭକୁ ଏ ଅନର୍ଥ ଉପଦେଶ ଦେଲା ? ମୋତେ ଏକଥା କହିବାପାଇଁ ତୁମ୍ଭକୁ ଲାଜ ମାଡ଼ୁ ନାହିଁ ? ଯୌବନାବସ୍ଥାରେ ତୁମ୍ଭର ସ୍ୱଭାବ ମନ୍ଦ ବୋଲି ଜାଣି ନ ଥିଲି—ପ୍ରୌଢ଼ାବସ୍ଥାରେ ତାହାର ବିପରୀତ କାହିଁକି ହେଲା ? ତୁମ୍ଭେ ରାମକୁ ଡରୁଛ କାହିଁକି ? ରାମର ବନବାସ ଆଉ ଭରତର ରାଜ୍ୟାଭିଷେକ ବର ମାଗୁଛ କାହିଁକି ? ଏଥିରେ କାହାରି ଭଲ ନାହିଁ । ତୁମ୍ଭେ ଏ ମନବାସନା ଛାଡ଼ ?—ରେ ନଷ୍ଟୁରେ ! ମୁଁ ତୋର କି ଅପରାଧ କରିଛି—ତୋତେ ମୁଁ କି କଷ୍ଟ ଦେଉଛି—ରାମ ଅବା ତୋତେ କି କଷ୍ଟ ଦେଉଛି ତୋର କି ଅପରାଧ କରିଛି ?—ରାମ ଆଗରେ ଭରତ କେବେ ରାଜା ହେବ ନାହିଁ ଏହା କି ତୁ ନ ଜାଣୁ—ଭରତ ଯେ ରାମଠୁଁ ଅଧିକ ଧାର୍ମିକ ।—ମୁଁ ଯେତେ-

ଯେତେବେଳେ ରାମକୁ ବନକୁ ଯାଅ ବୋଲି କହିବ ସେତେବେଳେ ତାର ମୁଁହ ସନ୍ତପ୍ତ ଚନ୍ଦ୍ରପରି ଶୁଖିଯିବ—ମୁଁ ତା କିପରି ଦେଖିବି ! ମୁଁ ଯାହା ପରାମର୍ଶ କରି ଠିକ୍ କରିଛି ସେ କଥାରେ ମୁଁ କିରୂପେ ତାହା ଓଲଟାଇ ଦେବି ? ମୋତେ ରାଜାମାନେ ସମସ୍ତେ ନିନ୍ଦା କରିବେ । ରାମ କେଉଁଠି ବୋଲି ସେମାନେ ମୋତେ ପଚାରିଲେ ମୁଁ କି ବୋଲି ଉତ୍ତର ଦେବି ? ମୁଁ କୈକେୟୀ କଥାରେ ରାମକୁ ବନକୁ ପଠାଇଛି ବୋଲି କହିଲେ ସେମାନେ କି ତାହା ବିଶ୍ୱାସ କରିବେ ? ରାମ ବନକୁ ଗଲେ ମୁଁ କୌଶଲ୍ୟାକୁ କି କହିବି ? କୌଶଲ୍ୟା ସବୁବେଳେ ମୋର ପ୍ରିୟକାମନା କରନ୍ତି—ବେଳ ଦେଖି ମା, ଭଗିନୀ, ଭାର୍ଯ୍ୟା, ସଖୀ ଏବଂ ଦାସୀ ପରି ମୋର ସେବା କରନ୍ତି—ସୁତରାଂ ତାଙ୍କର ପ୍ରିୟକାର୍ଯ୍ୟ କରିବା ମୋର ଉଚିତ—ମାତ୍ର ମୁଁ ସେଥିପାଇଁ ତାହା କରି ନାହିଁ । ରାମର ପ୍ରତି ମୋର ଅତ୍ୟାଚାର ଦେଖିଲେ ସୁମିତ୍ରାଦେବୀ ଭୀତା ହୋଇ ଆଉ ମୋତେ ବିଶ୍ୱାସ କରିବେ ନାହିଁ । ବୈଦେହୀ ସୀତା ଏକାବେଳକେ ମୋର ମରଣ ଓ ରାମର ବନଗମନ ବାର୍ତ୍ତା ଶୁଣିବେ ! ହିମାଳୟପାର୍ଶ୍ୱରେ କିନ୍ନର ବିନା କିନ୍ନରୀର ଯେରୂପ ଦଶା ହୁଏ ରାମ ବିନା ସୀତାର ସେହିପରି ଦଶା ହେବ ! ରାମକୁ ଅରଣ୍ୟବାସ ଆଉ ସୀତାକୁ ରୋଦନ କରିବାର ଦେଖି ମୋର ପ୍ରାଣ ଫାଟି ଯିବ ! ରାମ ବନକୁ ଗଲେ ମୁଁ ବଞ୍ଚିବି ନାହିଁ । ତୁ ବିଧବା ହୋଇ ପୁତ୍ର ସହିତରେ ରାଜ୍ୟ କରିବୁ । ହାୟ ! ବିଷଯୁକ୍ତ ମଦରା ପ୍ରିୟ ବୋଲି ଲୋକେ ପାନ କରି ପଛକୁ ବୁଝିଲା ପ୍ରାୟ ମୁଁ ତୋତେ ଯାହା ସତୀ ବୋଲି ବୁଝିଥିଲି ଏବେ ଅତ୍ୟନ୍ତ ଅସତୀ ବୋଲି ବୁଝି ପାରିଲି !—ଓଃ ! ବ୍ୟାଧ ଗୀତଦ୍ୱାରା ମୃଗକୁ ଆବଦ୍ଧ କରି ବଧ କଲା ପ୍ରାୟ ତୁ ବୃଥା ସାନ୍ତ୍ୱନାବାକ୍ୟରେ ମୋତେ 'ବଶୀଭୂତ କରି ଏବେ ବଧ କରୁଛୁ । ପୁତ୍ରମୂଲ୍ୟରେ ମୋର ସୁଖ କିଣିଲେ ମୋତେ ଆର୍ଯ୍ୟମାନେ ସୁରାପାୟୀ ବ୍ରାହ୍ମଣପ୍ରାୟ ଅନାର୍ଯ୍ୟ ବୋଲି ନିନ୍ଦା କରିବେ ।—ହାୟ କି ଦୁଃଖ ! ଓଃ କି କଷ୍ଟ ! ତୁମ୍ଭର ଏ ସବୁ କଥା କି ମୋତେ କ୍ଷମା କରିବାକୁ ହେଉଛି ! ମୁଁ ପୂର୍ବଜନ୍ମରେ କେତେ ଅଶୁଭ କରିଛି ! ତୁମ୍ଭକୁ ମୁଁ କ୍ଳେଶଦାୟିନୀ ବୋଲି ଜାଣି ନ ପାରି ଏତେକାଳ ରକ୍ଷା କରି ଆସୁଛି ! ପିଲାଏ ଖେଳୁ ଖେଳୁ ନିର୍ଜନରେ କୃଷ୍ଣସର୍ପକୁ ସ୍ପର୍ଶ କଲାପ୍ରାୟ ମୁଁ ତୁମ୍ଭର ପ୍ରଣୟରେ ମୃତ୍ୟୁମୁଖରେ ପଡ଼ିବି ବୋଲି ଜାଣି ନ ଥିଲି । ହା ମୁଁ କି ଦୁର୍ଭାଗ୍ୟ ! ଜୀବିତ ଥାଉଁ ରାମକୁ ପିତୃହୀନ କଲି ! ମୁଁ ସ୍ତ୍ରୀକଥାରେ ପ୍ରିୟପୁତ୍ରକୁ ବନକୁ ପଠାଇଲି ! ଏଥିରେ ସମସ୍ତେ କହିବେ ଏକା

ଦଶରଥଙ୍କ ଏଡ଼େ ଅଜ୍ଞାନ—ଏଡ଼େ କାମାତୁର ! ଆହା ! କାହିଁ ରାମ ବିଷୟ ଉପଭୋଗ କରିବ ନା ତାକୁ ବ୍ରହ୍ମଚର୍ଯ୍ୟ ବ୍ରତାନୁଷ୍ଠାନରେ ଦୁର୍ବଳ ହୋଇ ବନବାସର କଷ୍ଟ ସହିବାକୁ ପଡ଼ିଲା ! ମୁଁ ରାମଙ୍କୁ ବନକୁ ଯିବାପାଇଁ କହିଲେ ସେ ଯେ ଆଜ୍ଞା ବୋଲି କହିବ ।—ସେ ମୋ ଆଜ୍ଞା ନ ମାନିଲେ ଭଲ, ମାତ୍ର ସେ କି ତାହା କରିବ ? ସେ ମୋ ଅଭିପ୍ରାୟ ଜାଣିପାରିବ ନାହିଁ—ସେ ପ୍ରବୃତ୍ତି କରିବ ନାହିଁ । ରାମ ବନକୁ ଗଲେ ସମସ୍ତେ ମୋତେ ଘୃଣା କରିବେ ମୁଁ ତା ସହି ପାରିବ ନାହିଁ । ମୋତେ ମୃତ୍ୟୁ ଯମାଲୟକୁ ନେଇଯିବ । ରାମ ଆଉ ମୁଁ ଗଲେ ତୁ ମୋର ଅପର ପ୍ରିୟଜନଙ୍କପ୍ରତି କି ପାପାଚରଣ କରିବୁ ? ମୋତେ ଆଉ ପୁତ୍ରକୁ ହରାଇଲେ କୌଶଲ୍ୟା ଦେବୀ ତାହା ସହି ନ ପାରି ମୋହର ଅନୁଗମନ କରିବେ ! କୈକେୟି ! କୌଶଲ୍ୟା, ସୁମିତ୍ରା, ତିନୋଟି ପୁତ୍ର ଆଉ ମୋତେ ନରକରେ ପକାଇ ତୁ ସୁଖାନୁଭବ କର !—ଇକ୍ଷ୍ୱାକୁବଂଶ ଏବେ ନଷ୍ଟ ହେଲା ! ( କ୍ରୋଧଭରରେ ) ଯେବେ ରାମଙ୍କୁ ବନକୁ ପଠାଇବା ଈଶ୍ୱରଙ୍କ ମତ ହୁଏ ତେବେ ମୁଁ କହୁଛି ମୁଁ ମଲେ ସେ ମୋର ଶ୍ରାଦ୍ଧ କରିବ ନାହିଁ । ଅନାର୍ଯ୍ୟେ ! ମୋର ଅନିଷ୍ଟ କରି ତୁ ମନୋରଥ ସଫଳ କର ! ରାଜନନ୍ଦନ ! ଦୁର୍ଦ୍ଦୈବକୁ ତୁ ମୋ ଘରକୁ ଆସିଥିଲୁ—ତୋପାଇଁ ଲୋକରେ ମୋର କେତେ ଅପକୀର୍ତ୍ତି ଆଉ ଘୃଣା ହେଲା ! ( ଅତି ଶୋକଭରରେ ) ହାୟ ! ଯେ ରାମ ହାତୀ, ଘୋଡ଼ା-ରଥରେ ଚଢ଼ି ବୁଲୁଥିଲା ସେ କପରି ମହାବନରେ ଖାଲିଗୋଡ଼ରେ ବୁଲିବ ! ଆହା ! ଯାହାପାଇଁ ପାଚକେ ରାନ୍ଧିବାକୁ ଧରାପରା ହୁଅନ୍ତି ସେ କପରି ବନରେ କଟୁ-ତିକ୍ତ-କଷାୟ ବନ୍ୟ ଆହାର ଖାଇ ବଞ୍ଚିବ ! ଯେ ବହୁମୂଲ୍ୟ ବସନ ପିନ୍ଧି ସୁଖଶଯ୍ୟାରେ ଶୋଉଥିଲା ସେ କପରି ଗେରୁଆ ଲୁଗା ପିନ୍ଧି ଭୂଇଁରେ ଶୋଇବ !—ରାମଙ୍କ ବନଗମନ ! ଭରତର ରାଜ୍ୟାଭିଷେକ ! ଏ ନିଦାରୁଣ ବାକ୍ୟ କାହାର ? ଧିକ୍ ଧିକ୍ ! ସ୍ତ୍ରୀମାନେ ଅତ୍ୟନ୍ତ ସ୍ୱାର୍ଥପରାୟଣା—ଅତ୍ୟନ୍ତ ଧୂର୍ତ୍ତା ! ସମସ୍ତେ କହନ୍ତି—ମୁଁ ଭରତର ମାକୁ କହୁଛି ! ନିଷ୍ଠୁରେ ! ସ୍ୱାର୍ଥତତ୍ପରେ !—ରାମର ଏରୂପ ଦୁଃଖ ଦେଖିଲେ ପିତା ପୁତ୍ରକୁ ଛାଡ଼ି ପାରିବେ, ଭାର୍ଯ୍ୟା ସ୍ୱାମିକୁ ଛାଡ଼ି ପାରିବେ, ସମସ୍ତ ଜଗତ ତୋ ଉପରେ ରାଗିବେ । ରାମଙ୍କୁ ଦେଖିଲେ ମୋର ଯୌବନଦଶା ଉପସ୍ଥିତ ହେଲାପରି ମନେ ହୁଏ ! ସୂର୍ଯ୍ୟ ଉଦୟ ନ ହେଲେ ଲୌକିକ ବ୍ୟବହାର ନିର୍ବାହ ହୋଇ ପାରେ, ଇନ୍ଦ୍ର ବୃଷ୍ଟି ନ କଲେ ଲୋକେ ବଞ୍ଚି ପାରନ୍ତି ମାତ୍ର ରାମଙ୍କୁ ବନକୁ ଯିବାକୁ ଦେଖିଲେ କେହି

ବନ୍ଧୁ ପାଇବେ ନାହିଁ । ତୁ ମୋର ମୃତ୍ୟୁରୂପିଣୀ ଶତ୍ରୁ ! ମୋହବଶରୁ ମୁ ମହାବିଷଯୁକ୍ତ ସର୍ପିଣୀକୁ କୋଳରେ ଧରିଥିଲି—ଏବେ ସେହିଥିରୁ ମଲି ! ମୋର ବୃଦ୍ଧାବସ୍ଥାରେ ତୁ ଗର୍ବ କରି ଏପରି କଥା କହଲୁ—କହିଁ ରେ କ ତୋ ମୁହଁରୁ ଦାନ୍ତ ସବୁ ଝଡ଼ିପଡ଼ିଲା ନାହିଁ ?—କେକୟରାଜକୁଳକଳଙ୍କିନି ! ତୁ ଦୁଃଖିତା ହୋ, ବା ଜଳରେ ପଶି ପ୍ରାଣ ତ୍ୟାଗ କର, ଅବା ବିଷପାନ କରି ମର, କି ଅବା ଭୂଗର୍ଭରେ ପଶ, ତୋର ଏଦାରୁଣ କଥା ମୁ କେବେ ମାନିବି ନାହିଁ । ତୁ ଦେବକନ୍ୟାପ୍ରାୟ ମୋର ମନମୋହନୀ ହେଲେ ସୁଦ୍ଧା ମୁଁ ଏତେବେଳେ ତୋର ବଶବର୍ତ୍ତୀ ହେବି ନାହିଁ । ତୁ ମୋର ମନ ପ୍ରାଣ ଦହିବାକୁ ବସିଛୁ—ମୋର ବଂଶ ବିନାଶ କରିବାକୁ ବସିଛୁ ! (କ୍ରନ୍ଦନପରାୟଣ) ଦେବି ! ମୁଁ ରାମ ବିନା ବଞ୍ଚି ପାରିବି ନାହିଁ—ମୁଁ ତୁମ୍ଭର ଗୋଡ଼ ଧରୁଛି—ମୋର ମନ କର ନାହିଁ !—ମୋତେ ରକ୍ଷା କର (ହଠାତ୍ ଉଠି କୈକେୟୀର ଗୋଡ଼ ଧରିବାକୁ ଯାଇ ଧରୁଁ ମୂର୍ଚ୍ଛିତ ଓ ଭୂତଳେ ପତନ ।)

ପ ଟ କ୍ଷେ ପ ଣ ।

—o❀o—

ଦ୍ୱିତୀୟ ଦୃଶ୍ୟ । ଶୟନାଗାରର ଦ୍ୱାରଦେଶ ।

[ ବନ୍ଦୀଦ୍ୱୟ ଦ୍ୱାରଦେଶେ ଯନ୍ତ୍ରସହିତ ଉପବିଷ୍ଟ । ]

ବନ୍ଦୀଦ୍ୱୟ ।— (ଗୀତ ।)

ରାଗ ଭୈରବୀ—ତାଳ କଓ୍ୱାଲି ।

ସୁଖ ନିଶା ଆସି ଶେଷ ହେଲା—
ଏବେ ଉଠ ଶ୍ରୀ ମହାରାଜ ! ପଦ ।
ନବରାଗେ ପ୍ରାଚୀ ସୁରଞ୍ଜିତ,
ନବରାଗେ ପିକ କରେ ଗୀତ ;
ହସଇ ତରୁର ଫୁଲକଳେବର
ଦେଖ କେଡ଼େ ସୁନ୍ଦର ସାଜ ! ୧ ।
ନୂତନ କରେ ଯେତେ ବିହଙ୍ଗନିକର
ଅତି ସୁଲଳିତ ଯଶୋଗୀତ—
ରାମ ଉଦ୍ଭବର କରିବେ ଯେ ଉଜ୍ଜ୍ୱଳ
ସିଂହାସନେ ବସି ଆଜ ! ୨ ।

( ଦ୍ୱାରୀର ପ୍ରବେଶ ।

ଦ୍ୱାରୀ ।—ମହାରାଜଙ୍କର ମନ ଅସୁସ୍ଥ । ତୁମ୍ଭକୁ ଆଜ୍ଞା ହେଉଛି ଆଉ ଗୀତ ଗାଅ-ନାହିଁ । ( ବନ୍ଦୀଦ୍ୱୟଙ୍କର ପ୍ରସ୍ଥାନ ।

ଦ୍ୱାରମୋଚନ ।

[ ରାଜା ଦଶରଥ ଶୟାନ । କୈକେୟୀ ପାର୍ଶ୍ୱେ ଦଣ୍ଡାୟମାନା ]

କୈକେୟୀ ।—ତୁମେ ସତ୍ୟବ୍ୟବହାରୀ ହୁଅ । ଧର୍ମପାଳନାର୍ଥେ ରାମଙ୍କୁ ନିର୍ବାସିତ କର । ମୁଁ ଥରେ, ଦୁଇଥର, ତିନିଥର ଶପଥ କରି କହୁଛି ତୁମେ ଅଙ୍ଗୀକାର ନ ପାଳିଲେ ମୁଁ ଅପମାନିତା ହୋଇ ଜୀବନ ଛାଡ଼ିଦେବି ।

ଦଶ ।—( କ୍ରୋଧଭରେ ) ପାପୀୟସୀ ରେ ! ମୁଁ ଅଗ୍ନି ସମକ୍ଷରେ ମନ୍ତ୍ର ପାଠ କରି ତୋର ଯେ ହାତ ଧରିଥିଲି ତାହା ପରିତ୍ୟାଗ କଲି, ତୋ ଗର୍ଭରେ ମୋର ଯେ ପୁତ୍ର ହୋଇଛି ତାହାକୁ ବି ପରିତ୍ୟାଗ କଲି । ରାତି ପାହିଲାଣି, ଏହିକ୍ଷଣି ସୂର୍ଯ୍ୟୋଦୟ ହେବ—ତେତେବେଳେ ବଶିଷ୍ଠ ଆଉ ଗୁରୁଜନମାନେ ଆସି ଅଭିଷେକପାଇଁ ମୋତେ ଚଞ୍ଚଳ କରାଇବେ । ତୁ ଯେବେ ସେତେବେଳେ ବ୍ୟାଘାତ କରିବୁ ମୋର ନିଶ୍ଚୟ ମୃତ୍ୟୁ ହେବ—ମୁଁ ମଲେ ଗୁରୁଜନମାନେ ରାମଙ୍କ ଅଭିଷେକ-ଉପକରଣ ସେଇ ମୋର ଅନ୍ତ୍ୟେଷ୍ଟି କ୍ରିୟା କରାଇବେ—ତୁ ମୋର ଅନ୍ତ୍ୟେଷ୍ଟି କ୍ରିୟା କରିବୁ ନାହିଁ ବା ତୋର ପୁତ୍ର ବି କରିବ ନାହିଁ ।

କୈକେୟୀ ।—ଏ ସବୁ କି କଥା ମହାରାଜ ! କ୍ଷଣକରେ ଉନ୍ମତ୍ତ ହେଲାପ୍ରାୟ କି କଥାଗୁଡ଼ାଏ କହୁଛ ! ରାମଙ୍କୁ ଡକାଇ ପଠାଇବା ତୁମର ଉଚିତ ହେଉଛି । ତୁମେ ଭରତଙ୍କୁ ରାଜ୍ୟରେ ବସାଇ ଆଉ ରାମଙ୍କୁ ବନକୁ ପଠାଇ ମୋତେ ଶତ୍ରୁବର୍ଜିତ କରି କୃତକୃତ୍ୟ ହୁଅ—ନୋହିଲେ ତୁମର ନିସ୍ତାର ନାହିଁ ।

ଦଶ ।—( ଅତି କାତରସ୍ୱରରେ ) ଓଃ ! ତୋର ବାକ୍ୟବାଣ ନ ସହି ହେଉ-ନାହିଁ !—( ଦୀର୍ଘନିଶ୍ୱାସ ତ୍ୟାଗ କରି ) ମୁଁ ଧର୍ମପାଶରେ ଆବଦ୍ଧ ହୋଇଛି—ମୋର ଚେତନାଶକ୍ତି ରହିତ ହୋଇଛି—ପ୍ରିୟପୁତ୍ର ଧାର୍ମିକ ରାମଙ୍କୁ ମୁଁ ଟିକିଏ ଦେଖନ୍ତି !—( ମଥା ପୋତି ରହିବାର । )

[ ସୁମନ୍ତ୍ରର ପ୍ରବେଶ ।

ସୁମନ୍ତ୍ର ।—( ଅନ୍ତରାଳବର୍ତ୍ତୀରେ ) ମହାରାଜ ! ରାତି ପାହିଲାଣି । ବର୍ତ୍ତମାନ ରାମାଭିଷେକ କାର୍ଯ୍ୟ ସମାଧା କରିବା ଉଚିତ । ଆପଣ ଗାତ୍ରୋତ୍ଥାନ କରନ୍ତୁ । ଗଙ୍ଗାଜଳ ଓ ସାଗରଜଳପୂର୍ଣ୍ଣ କାଞ୍ଚନଘଟ, ଉଡ଼ୁମ୍ବରକାଷ୍ଠର ପୀଠ, ଯବ, ସର୍ଷପ ପ୍ରଭୃତି ସମସ୍ତ ବୀଜ, ଗନ୍ଧ, ବିବିଧ ରତ୍ନ, ଦଧି, ମଧୁ, ଘୃତ,

ମଧୁ, ଖଇ, ଫୁଲ, ଲୁଚ, ମଦମତ୍ତ ହସ୍ତୀ, ଚାରି ଘୋଡ଼ାର ରଥ, ଖଡ୍ଗ
ଶସ୍ତ୍ର, ଧନୁ, ଶିବିକା, ଛତ୍ର, ଶ୍ୱେତଚାମର, ସୁବର୍ଣ୍ଣଭୃଙ୍ଗାର, ହେମଦାମ-
ଭୂଷିତ ପ୍ରଶସ୍ତ କକୁଦ୍-ସମ୍ପନ୍ନ ପାଣ୍ଡୁରବର୍ଣ୍ଣ ବୃଷ, ଚତୁର୍ଦନ୍ତ ହସ୍ତୀ, ମହା-
ବଳଶାଳୀ ଶ୍ରେଷ୍ଠ ଅଶ୍ୱ, ସିଂହାସନ, ବ୍ୟାଘ୍ରଚର୍ମ, ସମିଦ୍ଧ ଅଗ୍ନି ଏ ସବୁ ସଜ୍ଜିତ
ହୋଇଛି; ମଧ୍ୟ ଆଠୋଟି ମନୋହରାଙ୍ଗୀ କନ୍ୟା, କେତେଗୁଡ଼ିଏ ଅଳଂକୃତ
ସଧବା ସ୍ତ୍ରୀ ଏବଂ ନୃତ୍ୟଗୀତପରାୟଣା ଅନେକ ବେଶ୍ୟାଙ୍କୁ ଅଣା ହୋଇଛି;
ଆଚାର୍ଯ୍ୟ, ବ୍ରାହ୍ମଣ, ଗାଭୀ, ପବିତ୍ର ମୃଗ, ପବିତ୍ର ପକ୍ଷୀ, ମୁଖ୍ୟ ମୁଖ୍ୟ ପୌର,
ଶ୍ରେଷ୍ଠ ଶ୍ରେଷ୍ଠ ଜାନପଦ, ନଗରପତି ଓ ସ୍ୱଜନଗଣପରିବୃତ ବଣିକ୍ ଏମାନେ
ଓ ଅପରାପର ପ୍ରିୟବାଦୀ ଅନେକଲୋକେ ରାମାଭିଷେକ ଦେଖିବାପାଇଁ
ସମୁତ୍ସୁକଚିତ୍ତରେ ଆନନ୍ଦମନରେ ଠୁଳ ହୋଇଛନ୍ତି । ଭଗବାନ୍ ବଶିଷ୍ଠ
ସେମାନଙ୍କ ସହିତ ଦ୍ୱାରଦେଶରେ ଅଛନ୍ତି । ଛାମୁରୁ ଶୀଘ୍ର ରାମାଭିଷେକର
ଆଦେଶ ହେଉ ଓ ଛାମୁ ମଧ୍ୟ ସେଠାରେ ବିରାଜମାନ ହେଉନ୍ତୁ ।

ଦଶ ।—( ସୁମନ୍ତ୍ରଆଡ଼କୁ ଅନାଇଁ ) ତୁମ୍ଭେ ଏ ସବୁକଥା କହି ମୋର ଅନ୍ତର
ମର୍ମଭେଦ କରୁଛ !

ସୁମନ୍ତ୍ର ।—( ଟିକିଏ ପଛକୁ ହଟିଯିବାର । )

କୈକେୟୀ ।—ସୁମନ୍ତ୍ର ! ମହାରାଜ ରାମାଭିଷେକ ହେତୁ ଆନନ୍ଦରେ ସମୁତ୍ସୁକ
ଥାଇ ରାତ୍ରିଯାକ ଜାଗି ବର୍ତ୍ତମାନ କ୍ଳାନ୍ତ ହୋଇ ନିଦ୍ରାର ଆସ୍ୱାଦ ନେଉ-
ଛନ୍ତି । ତୁମର ଏସବୁ କଥା ବିସ୍ତର କହିବାର ଅବକାଶ ନାହିଁ । ତୁମେ
ଶୀଘ୍ର ଯାଇ ରାମଙ୍କୁ ଏଠାକୁ ଘେନିଆସ । ତୁମର ମଙ୍ଗଳ ହେଉ ।

ସୁମନ୍ତ୍ର ।—( ସାଶ୍ଚର୍ଯ୍ୟଭାବେ ] ଦେବ ! ଛାମୁରୁ ନ ଶୁଣି ମୁଁ କିପରି ଯିବି !

ଦଶ ।—ସୁମନ୍ତ୍ର ! ମୋର ରାମଙ୍କୁ ଦେଖିବାକୁ ଅତ୍ୟନ୍ତ ମନ ବଳୁଛି—ତୁମ୍ଭେ
ଶୀଘ୍ର ତାହାଙ୍କୁ ଘେନିଆସ ।

ସୁମନ୍ତ୍ର ।—ଯେ ଆଜ୍ଞା । ( ପ୍ରସ୍ଥାନ । )

କୈକେୟୀ ।—( ସ୍ୱଗତ ) ମୁଁ ତ ଏଭଳକଥା କାହିଁ ଦେଖି ନାହିଁ । ଧନ୍ୟ ଇକ୍ଷ୍ୱାକୁ-
କୁଳରେ ଜନ୍ମ ହୋଇ ସୂର୍ଯ୍ୟବଂଶ ଉଜ୍ଜ୍ୱଳ କରି ଆଜି ନାରୀନିକଟରେ
ପରାଜୟ ପାଉଛନ୍ତି ।—କାହିଁକି ? ମୋତେତ ଆଗରୁ ବର ଦେଇଛ—
ଆଉତ ପୁଅ ଅଛନ୍ତି—ହେଲାଇ ଏବେ ଗୃହସ୍ଥଆଭଡ଼ରେ ଗୋଟିଏ
ବନକୁ ଗଲା । ଭରତ ତ ଅଛି । ଯେବେ ମହାରାଜଙ୍କର ଚାରିପୁଅଙ୍କ-
ଠାରେ ସମାନ ସ୍ନେହ ଅଛି ତେବେ ରାମ ସିଂହାସନରେ ବସିଲେ
ଯେପରି ଭରତ ମଧ୍ୟ ସିଂହାସନରେ ବସିଲେ ସେପରି । ଓହୋ—ଏବେ

ବେଳେ ମୁଁ ବୁଝି ପାରିଲି ଯେ ମହାରାଜ ମୋତେ କପଟସ୍ନେହ କରୁଥିଲେ । ମୋଠି ଯେବେ ପ୍ରେମ ଥାନ୍ତା ତେବେ କ କୌଶଲ୍ୟାର ପୁଅ ରାଜା ହେଉଥାନ୍ତା । ରାଜା ମୋତେ ଖାଲି ମିଠାକଥା କହନ୍ତି ମାତ୍ର ଏତେଦିନେ ଦେଖାଗଲା ଯେ ସେତ ମୋର ନୁହନ୍ତି—କୌଶଲ୍ୟାର । ଯେପରି କର୍ମ ସେପରି ଫଳ ! ଯେବେ ଭରତକୁ ଦେଖି ନ ପାରି ରାମକୁ ଦେଖି ପାରି ତେବେ ତାର ଉଚିତ ପ୍ରତିଶୋଧ ହେଉଛି—ଦେଖିବ କେମନ୍ତେ ତୁମେ ବର ନ ଦେବ—କେମନ୍ତେ ରାମ ବଣକୁ ନ ଯିବ—ମୁଁ ଯେବେ କେକେୟରାଜାର ଝିଅ ହୋଇଥିବି ତେବେ ମୋର ପୁଅକୁ ରାଜା କରେଇ ଛିଡ଼ା !—ଆଜ ମାମୁଘରୁ ଭରତଶତ୍ରୁଘ୍ନଙ୍କୁ ନେଇଆସିବି—ତୁମେ ଯେବେ ରାମବନା ବଞ୍ଚି ନ ପାରିବତ ନାହିଁ—ରାମତ ବନକୁ ଯିବ—ତୁମେ ମଲେ ଭରତବନା ଆଉ କିଏ ରାଜା ହେବ କି ?

[ ସୁମନ୍ତ୍ର ସହିତ ରାମଚନ୍ଦ୍ରର ପ୍ରବେଶ ।

ରାମ ।—( ରାଜା ଦଶରଥ ଓ କୈକେୟୀଙ୍କ ଚରଣ ବନ୍ଦନ । )

ଦଶ ।—( ଦୀର୍ଘନିଶ୍ୱାସ ପରିତ୍ୟାଗ କରି ଅତି କାତରସ୍ୱରେ ) ରାମ !—( ମଥା ତଳକୁ ପୋତି ରହିବାର । )

ରାମ ।—( ସ୍ୱଗତ ) ବାପା ଏପରି କାହିଁକି ବସିଛନ୍ତି—ଆଜ କାହିଁକି ମୋତେ ଖୁସି ହୋଇ କଥା କହୁ ନାହାନ୍ତି ! ଆଉବେଳେ ରାଗ ହୋଇଥିଲେବି ବାପା ମୋତେ ଦେଖିଲେ ଖୁସି ହୁଅନ୍ତି ଆଜ କାହିଁକି ମୋତେ ଦେଖି ତାଙ୍କର ଶୋକ ଉଦ୍ରେକ ହେଲା ! ( ପ୍ରକାଶ୍ୟେ ) ମା ! ମୁଁ ତ କ ଜାଣି କିଛି ଦୋଷ କରି ନାହିଁ ଯେ ବାପା ମୋ ଉପରେ ରାଗିଛନ୍ତି—ମୋତେ ଟିକି କହନ୍ତୁ । ଯେବେ ବାପା ମୋ ଉପରେ ରାଗିଥାନ୍ତି ତେବେ ଆପଣ ତାଙ୍କୁ ପ୍ରସନ୍ନ କରାନ୍ତୁ । ସେତ ସବୁବେଳେ ମୋତେ ବଡ଼ ଦେଖି ପାରନ୍ତି—ମାତ୍ର ବର୍ତ୍ତମାନ ତାଙ୍କୁ ଏତେ ବିଷଣ୍ଣବଦନ ଓ ଦୁଃଖିତ ଦେଖାଯାଉଛି ଯେ ମୋତେ ତଥା କହୁ ନାହାନ୍ତି !—ଏ କି କାଣ୍ଡ ? ସମସ୍ତଙ୍କୁ ସବୁବେଳେ ସୁଖ ଘଟେ ନାହିଁ ;—ବାପାଙ୍କର ଶାରୀରିକ ଓ ମାନସିକ କିଛି ସନ୍ତାପ ଉପସ୍ଥିତ ହୋଇ ନାହିଁ ତ ? ମୋର ମାମାନଙ୍କର, ପ୍ରିୟଦର୍ଶନ ଭରତ କିମ୍ବା ମହାପରାକ୍ରମଶାଳୀ ଶତ୍ରୁଘ୍ନର ତ କିଛି ଅନିଷ୍ଟ ଘଟି ନାହିଁ ? ପିତୃବାକ୍ୟ ପାଳନ ନ କରି ତାଙ୍କୁ ସନ୍ତୁଷ୍ଟ କରି ନ ପାରିଲେ କି ପିତା ମୋ ଉପରେ ଚିଡ଼ିଗଲେ ମୁଁ ମୁହୂର୍ତ୍ତେ ବଞ୍ଚିବାକୁ ଇଚ୍ଛେ ନାହିଁ । ଜନ୍ମଦାତା ପିତା ସାକ୍ଷାତ ଦେବତା—ତାଙ୍କପ୍ରତି କିଏ ଅସଦ୍ବ୍ୟବହାର କରିବ ? ଆପଣ ଅଭିମାନିନୀ ହୋଇ

କ୍ରୋଧବଶରୁ କିଛି ପରୁଷବାକ୍ୟ ତାଙ୍କୁ କହି ନାହାନ୍ତି ? ମା ମୋତେ ଠିକ କରି କହନ୍ତୁ ଏଥିର ଅର୍ଥ କିସ ?

କୈକେ ।—ରାମ ! ତୋର ପିତାର କୌଣସି ଦୁଃଖ ଉପସ୍ଥିତ ହୋଇ ନାହିଁ—ସେ କି ରାଗି ନାହାନ୍ତି । ତାଙ୍କର ଗୋଟିଏ ମନୋଗତ ଅଭିପ୍ରାୟ ଅଛି ତୋ ଡରରେ ସେ କହି ପାରୁ ନାହାନ୍ତି । ତୁ ତାଙ୍କର ନିତାନ୍ତ ପ୍ରିୟ—ସେ ତୋତେ ଅପ୍ରିୟକଥା କହି ପାରୁ ନାହାନ୍ତି । ମାତ୍ର ସେ ମୋଠାରେ ଯେ ପ୍ରତିଜ୍ଞା କରିଅଛନ୍ତି ତାହା ତୋତେ କରିବାକୁ ହେବ । ରାମ ! ତୋ ପିତା ପୂର୍ବେ ମୋତେ ବର ଦେବାକୁ ଅଙ୍ଗୀକାର କରିଥିଲେ ଏବେବେଳେ ସାମାନ୍ୟ ଲୋକପରି ପଶ୍ଚାତ୍ତାପ କରୁଅଛନ୍ତି । ଯାଚି ବାହାରିଗଲେ ଯେଉଁବନ୍ଧ କରିବା କଷ୍ଟଲ—ବର ଦେବାକୁ ଅଙ୍ଗୀକାର କରି ଏବେବେଳେ ତହିଁର ଅନ୍ୟଥା କରିବାକୁ ଚେଷ୍ଟା କରିବା ମଧ୍ୟ ସେହିପରି କଷ୍ଟଲ । ଧର୍ମର ମୂଳ-କାରଣ ସତ୍ୟ—ସେଥିପାଇଁ ମୁଁ କହୁଛି ତୁ ଏପରି କର ଯେମନ୍ତ ତ ପିତା ତୋପାଇଁ ମୋ ଉପରେ ରାଗିଯାଇ ସତ୍ୟ ପରିତ୍ୟାଗ ନ କରନ୍ତି । ପିତା ତୋତେ ଯାହା କହିବେ ଶୁଭ ହେଉ ଅଶୁଭ ହେଉ ତୁ ଯେବେ କରିବୁ ତେବେ ମୁଁ ତୋତେ ସବିଶେଷ କହିବି । ଯେବେ ତୁ ଅନ୍ୟଥା କରିବୁ ତେବେ ମୁଁ ତୋତେ ତାଙ୍କର କଥା କହିବି—ସେ କେବେ କହି ପାରିବେ ନାହିଁ ।

ରାମ ।—ଧିକ୍ ମୋତେ ! ମା ଆପଣ ଏପରି କହିବେ ନାହିଁ । ରାଜା ମୋର ପିତା ଓ ଗୁରୁ—ତାଙ୍କ ଆଦେଶରେ ମୁଁ ନିଆଁରେ ପଡ଼ିପାରେଁ—ହଳାହଳ ବିଷପାନ କରିପାରେଁ—ସମୁଦ୍ରରେ ବୁଡ଼ି ମରିପାରେଁ । ଆପଣ ପିତାଙ୍କର ଅଭିପ୍ରାୟ କହନ୍ତୁ—ମୁଁ ପ୍ରତିଜ୍ଞା କରୁଛି ତାହା ଅବଶ୍ୟ କରିବି । ମୁଁ ଥରେ ଯାହା କହେଁ କେବେ ତାର ଅନ୍ୟଥା ନ କରେଁ ।

କୈକେ ।—ରାମ ! ପୂର୍ବେ ଦେବାସୁର ମହାଯୁଦ୍ଧରେ ଅସୁରବାଣରେ ରାଜା ହତ ହେବାରୁ ମୁଁ ତାଙ୍କୁ ରକ୍ଷା କରିଥିଲି—ସେଥିଯୋଗୁଁ ସେ ମୋତେ ଯୋଡ଼ିଏ ବର ଦେବାକୁ ଅଙ୍ଗୀକାର କରିଥିଲେ । ମୁଁ ବର୍ତ୍ତମାନ ସେହି ଯୋଡ଼ିଏ ବରରୁ ମହାରାଜଙ୍କୁ ଗୋଟିକରେ ଭରତର ରାଜ୍ୟାଭିଷେକ ଆଉଟିରେ ତୋର ଦଣ୍ଡକାରଣ୍ୟକୁ ଯିବାର ମାଗିଛି । ତୁ ଯେବେ ପିତାଙ୍କୁ ଓ ଆପଣାକୁ ସତ୍ୟପ୍ରତିଜ୍ଞ କରିବାକୁ ବାଞ୍ଛା କରୁ ତେବେ ଶୁଣ—ତୋତେ ଚଉଦ-ବର୍ଷ ବନବାସ କରିବାକୁ ହେବ ଆଉ ତୋର ଅଭିଷେକପାଇଁ ଯେ ଦ୍ରବ୍ୟସବୁ ଠୁଳ ହୋଇଛି ତହିଁରେ ଭରତକୁ ଅଭିଷେକ କରିବାକୁ ହେବ ।

ତୋର ପିତା ଏହା ମୋଠାରେ ପ୍ରତିଜ୍ଞା କରିଅଛନ୍ତି ତୁ ତାହା ପାଳନ
କରି—ଅଭିଷେକ ପରିତ୍ୟାଗ କରି ଜଟାକୌପୀନ ସେନି ଦଣ୍ଡକା-
ରଣ୍ୟରେ ଚତୁର୍ଦ୍ଦଶବର୍ଷ ବାସ କର ଆଉ ଭରତ କୋଶଳପୁରରେ ଅଭିଷିକ୍ତ
ହୋଇ ହାତି-ଘୋଡ଼ା-ରଥପୂର୍ଣ୍ଣ ନାନାରତ୍ନସମାକୀର୍ଣ୍ଣ ଭୂମଣ୍ଡଳ ଶାସନ
କରୁ । ରାଜା ଏହି କାରଣରୁ ମଳିନବଦନ ଓ କାତର ହୋଇ ତୋତେ
ଅନାଇ ପାରୁ ନାହାନ୍ତି । ରାମ ! ତୁ ପିତାଙ୍କର ବାକ୍ୟ ପାଳନ କରି ତାଙ୍କୁ
ପରିତ୍ରାଣ କର ।

ସୁମ ।—( ସାଶ୍ଚର୍ଯ୍ୟ ସ୍ବରରେ ) କି ବିଷମ କଥା—ଏ ବୃଥା ମୁହଁରେ ଧରିବା
ଚେଷ୍ଟା ଥାଉ ମନରେ କେହି ଚିନ୍ତା କରି ନ ପାରେ—ଏତ ବେଶ କହି
ପକାଇଲେ !

ରାମ ।—( ଅବ୍ୟଥିତଚିତ୍ତରେ ) ତାହି ହେଉ—ମୁଁ ପିତାଙ୍କର ପ୍ରତିଜ୍ଞା ପାଳନ-
ନିମିତ୍ତ ଜଟାକୌପୀନ ଧାରଣ କରି ବନବାସୀ ହେବି ମାତ୍ର ମହାପ୍ରତାପ-
ଶାଳୀ ପରନ୍ତପ ପିତା ମୋତେ ପୂର୍ବପରି କାହିଁକି ସମାଦର କରୁ ନାହାନ୍ତି
ଜାଣିବାକୁ ମୋର ଅତ୍ୟନ୍ତ ଅଭିଳାଷ ହୋଇଛି । ମା ! ଏକଥା ପଚାରିବାରେ
ଆପଣ ଆଉ କିଛି ବିଗୁରି ମୋ ଉପରେ ରାଗ ହେବେ ନାହିଁ—ମୁଁ ଆପ-
ଣଙ୍କୁ କହୁଛି ନିଶ୍ଚୟ ମୁଁ ଜଟାକୌପୀନ ସେନି ବନକୁ ଯିବି—ଆପଣ ସନ୍ତୁଷ୍ଟା
ହେଉନ୍ତୁ । ରାଜା ମୋର ପିତା, ଗୁରୁ ଓ ହିତକାରୀ—ସେ ଉପକାରପାଇଁ
କୃତଜ୍ଞତା ଜଣାଇବାରେ ମୋତେ ଯାହା କହିବେ—ଏମନ୍ତ କୌଣସି କର୍ମ
ନାହିଁ ଯାହା କି ମୁଁ ନିର୍ବିଘ୍ନ ହୋଇ ସନ୍ତୁଷ୍ଟଚିତ୍ତରେ ନ କରିବି । ମା ! ପିତା
ଯେ ଭରତର ଅଭିଷେକ କଥା ନିଜେ କହୁ ନାହାନ୍ତି ଏହି ମନୋଦୁଃଖରେ
ମୋର ହୃଦୟ ଦହି ହୋଇଯାଉଛି ! ଭରତ ମୋର ସାନଭାଇ—ମୁଁତ
ନିଜେ ଖୁସି ହୋଇ ତାକୁ ରାଜ୍ୟ ଓ ଧନ ସବୁ ଦେଇପାରେଁ, ଏପରି କି
ସୀତା—ନାହିଁକି ପ୍ରାଣ ପର୍ଯ୍ୟନ୍ତ ଦେଇ ପାରେଁ; କିଜର ଓ ମନୁଜେନ୍ଦ୍ର, ପିତା
ଙ୍କର ପ୍ରତିଜ୍ଞା ରକ୍ଷା ଆଉ ଆପଣଙ୍କର ପ୍ରିୟ କାର୍ଯ୍ୟ ସମ୍ପାଦନପାଇଁ ନ ଦେବି
କିସ ?—ଆପଣ ପିତାଙ୍କୁ ଆଶ୍ୱସ୍ତ କରନ୍ତୁ—ସେ କାହିଁକି ମିଛରେ
ଲଜ୍ଜିତ ହୋଇ ଭୂମିକି ଅନାଇ ଲୁହ ଗଡ଼ାଉଛନ୍ତି । ରାଜାଜ୍ଞା ପାଇ ବର୍ତ୍ତ-
ମାନ ଦୂତମାନେ ଦ୍ରୁତଗାମୀ ଘୋଡ଼ାରେ ଯାଇ ଭରତକୁ ମାମୁଘରୁ
ଘେନି ଆସନ୍ତୁ ଆଉ ମୁଁ ପିତାଙ୍କର କଥାକୁ କି ଅନାଇ ଚତୁର୍ଦ୍ଦଶବର୍ଷପାଇଁ
ଦଣ୍ଡକାରଣ୍ୟକୁ ଯାଉଛି ।

କୈକେଇ ।—( ଅତି ଆନନ୍ଦଚିତ୍ତରେ ) ସେହିକଥା । ରାମ ! ଦୂତମାନେ ଦ୍ରୁତ-

ଗାମୀ ରଥରେ ଚଢ଼ି, ଭରତଙ୍କୁ ମାମୁଘରୁ ଆଣିବା ପାଇଁ ଯାଉନ୍ତୁ ମାତ୍ର [illegible] ତୋର ବନକୁ ଯିବାପାଇଁ ମନ ହେଉଛି, ମୋ ମତରେ ତୋର ଆଉ ବିଳମ୍ବ କରିବା ଉଚିତ ନୁହେ । ତୁ ଶୀଘ୍ର ଏଠାରୁ ବନକୁ ଯା । ରାମ, ତୁ ନରଶ୍ରେଷ୍ଠ । ରାଜା ଯେ ଲଜ୍ଜିତ ହୋଇ ତୋତେ କିଛି କହୁ ନାହାନ୍ତି ସେ କିଛି ଡରର କଥା ନୁହେ—ସେଥିପାଇଁ ତୁ ଦୁଃଖ କର ନାହିଁ—ଯେବଯାଏ ତୁ ଅଯୋଧ୍ୟାପୁରୀରୁ ବନକୁ ନ ଯାଉଛୁ, ସେ ପର୍ଯ୍ୟନ୍ତ ତୋର ପିତା ଜଳ ଗ୍ରହଣ କରିବେ ନାହିଁ ।

ଦଶ ।—( ଅତି ଶୋକରେ ) ହା କଷ୍ଟ ! ( ଦୀର୍ଘନିଃଶ୍ୱାସ ତ୍ୟାଗ ଓ ମୂର୍ଚ୍ଛା । )

ରାମ ।—ଏ କଣ, ଏ କଣ ! ( ଦଉଡ଼ିଯାଇ ରାଜାଙ୍କୁ ଚେତନ କରାଇ ଉଠାଇ ବସାଇ ) ମା', ମୁଁ ସ୍ୱାର୍ଥପରାୟଣ ହୋଇ କ୍ଷଣକାଳ ପୃଥିବୀରେ ରହିବାକୁ ଚାହେଁ ନାହିଁ—ପରନ୍ତୁ ଆପଣ ଜାଣନ୍ତୁ ମୁଁ ଋଷିମାନଙ୍କ ପରି କେବଳ ଧର୍ମନିରତ । ପିତାଙ୍କ ସେବା ଆଉ ପିତାଙ୍କ ଆଜ୍ଞା ପାଳନଠାରୁ ମହତ୍ତମ ଧର୍ମାଚରଣ ଆଉ ନାହିଁ । ତେଣୁ ମୁଁ ପ୍ରାଣ ଦେଇ ବି ପରମପୂଜନୀୟ ପିତାଙ୍କର ଯେବେ କୌଣସି ପ୍ରିୟକାର୍ଯ୍ୟ କରିବାକୁ ହେବ ତାହା କରେଁ । ପିତା ମୋତେ ନିଜେ କି ନ କହିଲେ ବି ମୁଁ ଆପଣଙ୍କ କଥାରେ ଚଉଦବର୍ଷ ବିଜନବନରେ ବାସ କରିବି । ମା ! ମୁଁ ନିଶ୍ଚେ ଜାଣୁଛି ଯେ ଆପଣ ମୋତେ ନିତାନ୍ତ ନିର୍ଗୁଣ ମନେ କରନ୍ତି କାରଣ ଆପଣ ମୋର ପ୍ରଭୁ ହୋଇ ସୁଦ୍ଧା ସେ କଥା ନିଜେ ମୋତେ ଆଦେଶ ନ କରି ପିତାଙ୍କୁ ଆଦେଶ କରିବାକୁ କହୁଛନ୍ତି ! ଆଜ ମୁଁ ମାଉ ଅନୁମତି ନେଇ ସୀତାଙ୍କୁ ଅନୁନୟ କରି ଦଣ୍ଡକାରଣ୍ୟକୁ ଯିବି । ବର୍ତ୍ତମାନ ଭରତ ଯହିଁରେ ରାଜ୍ୟପାଳନ ଏବଂ ପିତାଙ୍କର ସେବା କରନ୍ତି ତାହା ଆପଣଙ୍କର କରିବା ଉଚିତ—ଏହାହିଁ ସନାତନ ଧର୍ମ ।

ଦଶ ।—( ଚିତ୍କାରପୂର୍ବକ କାନ୍ଦିଉଠି ) ରାମ ରେ ଶେଷକୁ ତୁ ଏହା କଲୁ !— ମୋପାଇଁ ତୋର ଏ ଦଶା ହେଲା ! ! ( ମୂର୍ଚ୍ଛା ଓ ପତନ । )

ସୁମ ।—( କପାଳରେ ହାତ ମାରି କ୍ରନ୍ଦନସ୍ୱରେ ) ବିଧାତଃ ! ତ୍ରିଭୁବନପ୍ରିୟକାରୀ ରାମଚନ୍ଦ୍ରର ଏ ଦଶା କଲ !— ହା ରାମ ! ଆଉ ଏଠି ରହିବାର ନୁହେ !— ( କାନ୍ଦୁ କାନ୍ଦୁ ପ୍ରସ୍ଥାନ । )

ରାମ ।—( ମୂର୍ଚ୍ଛିତପିତାର ଓ କୈକେୟୀର ଚରଣବନ୍ଦନା କରି ପ୍ରସ୍ଥାନ । )

ଯବନିକାପତନ ।

( ନେପଥ୍ୟେ ଗୀତ । )

ରାଗିଣୀ ଶଙ୍କରା—ତାଳ ଆଡ଼ାଠେକା

ସତେ କି ହେ ରଘୁବର ଚଳିଲ କାନନ ବନ ।
ଦେଖୁଛ ଜନକ ପଦ୍ମ ତୁମେ ହୋଇ ଅଚେତନ । ଘୋଷା ।

କୈକେୟୀର ବାକ୍ୟବାଣ ନେବ ସମସ୍ତଙ୍କ ପ୍ରାଣ,
ମନ୍ଥରା ଦେଇଛି ଶାଣ,— ନ ଜାଣି ଦର୍ପ ସଜନ । ୧ ।
ପିତାଙ୍କ ପ୍ରତିଜ୍ଞାପାଶେ ବଦ୍ଧ ହେଲ ଧର୍ମଆଶେ—
ଲୋକଙ୍କ ଆଶା ଭରସା ଛାଡ଼ିଲ ସ୍ୱଜନ ଧନ । ୨ ।
ଆହା ଏସନ ରୂପରେ ହେତୁ ପିତୃସତ୍ୟ ପାଳେ !—
କେ ଯାଏ ବନ ଉଦେଶି ଅତିଶେଷ ଅଯୋଜନ ! ୩ ।

—·—※—·—

# ଚତୁର୍ଥ ଅଭିନୟ ।

ପ୍ରଥମ ଦୃଶ୍ୟ । କୌଶଲ୍ୟାର ପୁର ମଧ୍ୟସ୍ଥ ପ୍ରାଙ୍ଗଣ ।

( ବିଷ୍ଣୁ ପୂଜାର ପୀଠ ସ୍ଥାପିତ; ପୂଜାର ନାନାବିଧ ଉପକରଣ ସଂସ୍ଥାପିତ ଦେବତାର୍ଚ୍ଚନାବେଦୀରେ ଘୃତ, ମୋଦକ, ଦଧି, ଦୁଗ୍ଧ, ଲାଜା, ଶୁକ୍ଳବର୍ଣ୍ଣ ମାଲ୍ୟ ସମିତ୍, ପୂର୍ଣ୍ଣକୁମ୍ଭ, କ୍ଷୀର ଓ ପାୟସ ଇତ୍ୟାଦି ଯଥାବିଧି ବିବିଧ ପାତ୍ରରେ ରକ୍ଷିତ; ଦକ୍ଷିଣପାର୍ଶ୍ୱେ ପୁରୋହିତ ଉପବିଷ୍ଟ; ବାମପାର୍ଶ୍ୱେ ଶୁକ୍ଳକ୍ଷୌମପରିଧାନା କୌଶଲ୍ୟା ସୁମିତ୍ରା, ସୀତା, ଉର୍ମିଳା, ପ୍ରମଦା, ସୁନନ୍ଦା ଓ ଅନ୍ୟାନ୍ୟ ପୁରନାରୀମାନଙ୍କେ ଦଣ୍ଡାୟମାନା । )

ପୁରୋ ।—ମା, ତେବେ ମୁଁ ପୂଜା ଆରମ୍ଭ କରେଁ ?

କୌଶ ।—ହଁ, ଆଉ ବିଳମ୍ବ କଲେ ଚଳିବ ନାହିଁ । ଦିନ ପର୍ଚ୍ଚା ହେଲ ଅଥଚ —ଅଭିଷେକ ସମୟ ଅତି ନିକଟ ।

[ ପୂଜା ଓ ଶଙ୍ଖ ଘଣ୍ଟାଧ୍ୱନି । ]

ପୁରୋ ।—( ପୂଜାନ୍ତେ ) ମା, ପ୍ରସାଦୀ ସିନ୍ଦୂର ନେଅନ୍ତୁ । ( ସିନ୍ଦୂର ପ୍ରଦାନ । )

କୌଶ ।—( ସିନ୍ଦୂର ନେଇ ସୁମିତ୍ରା ସୀମନ୍ତରେ ଦେଇ ସୀତାର ସୀମନ୍ତରେ ଦେଇ ) ମା, "ତୁମେ ମୋର ଘରର ଲକ୍ଷ୍ମୀ, ତୁମେ ଅସିଲା ଦିନରୁ

ଅଯୋଧ୍ୟାର ରାଜଲକ୍ଷ୍ମୀ ଅତୁଳ ଶୋଭା ପାଇଛି—ରାଜରାଣୀ ହୋଇ ଯଶସ୍ୱୀ-ମାନ୍ ପୁତ୍ର ପ୍ରସବ କର, ମୋର ଏହି ଆଶୀର୍ବାଦ !—ଭଗବାନ୍ ଦେବଦେବ ବିଷ୍ଣୁ ଅବଶ୍ୟ ତୁମପ୍ରତି ସୁପ୍ରସନ୍ନ ହେବେ !—( ଉର୍ମିଳା ପ୍ରଭୃତି ଅନ୍ୟାନ୍ୟ ନାରୀମାନଙ୍କ ସୀମନ୍ତରେ ସିନ୍ଦୂର ପ୍ରଦାନ ) ।

ସୁନନ୍ଦା ।—( ଗୀତ । )

ରାଗିଣୀ ସାହାନା—ତାଳ ଯତି ।

କି ଆନନ୍ଦ ଦିନ ଆଜି ଅଯୋଧ୍ୟାନଗରେ ।
ରାଜଶ୍ରୀ ଅର୍ପିତା ହେବେ ରାମ ରଘୁବରେ । ପଦ ।
ରାଜ୍ୟାଧୀନ ନରନାରୀ ଆନନ୍ଦଉତ୍ସବେ ମିଳି
ମଙ୍ଗଳଆଚାର କରେ ଦେଖ ଘରେ ଘରେ । ୧ ।
ପତାକା ତୋରଣ ଗୁରୁ, ପୂର୍ଣ୍ଣକୁମ୍ଭ ରମ୍ଭାତରୁ,
ଶୋଭୁଛି ନଗର କେଡ଼େ ଚହିଁ ପୁଷ୍ପହାରେ । ୨ ।
ପଲ୍ଲବ କୁସୁମମାଳ ଶୋଭା କରେ ଦ୍ୱାର ଦ୍ୱାର,
ମଙ୍ଗଳବାଜଣା କେତେ ବାଜେ ଅନିବାରେ । ୩ ।
ପୁଣ୍ୟଯୋଗ ହେଲେ ପୂର୍ଣ୍ଣ ପୂର୍ଣ୍ଣ ହେବ ମନସ୍କାମ—
ଉଜ୍ଜ୍ୱଳିବେ ସିଂହାସନ ସୀତା ରଘୁବରେ । ୪ ।
କି ଆଉ ମାଗିବି ବର ବିଶ୍ୱପାତା ବିଶ୍ୱମୂଳ—
ଯଶ ଶିଖିବନ୍ତ ସୁତ ଶୋଭୁ ତାଙ୍କ କୋଳେ । ୫ ।

କୌଶ ।—ପ୍ରମଦେ ! ତୁମେମାନେ ସମସ୍ତେ ଯାଅ—ସୀତାଦେବୀଙ୍କି ଅଭିଷେକ ପାଇଁ ସଜାଇ ରଖ, ମୁଁ ହିଁ ଏବେ ଛାଡ଼ି ଯାଉଛି । ( ସୁମିତ୍ରା, ସୀତା, ଉର୍ମିଳା ପ୍ରଭୃତି ସମସ୍ତଙ୍କର କୌଶଲ୍ୟାଙ୍କୁ ଦଣ୍ଡବତ କରି ପ୍ରସ୍ଥାନ । ) ଏବେ ଆପଣ ହୋମ ଆରମ୍ଭ କରନ୍ତୁ ।

ପୁରୋ ।—ଯେ ଆଜ୍ଞା । ( ଅଗ୍ନି ହୋତ୍ର ହବନ । )

କୌଶ ।—( ଉପବେଶନ କରି କୁଳସ୍ୱାମୀ ଦେବତା ତର୍ପଣ । )

[ ଦାସୀଦ୍ୱୟର ପ୍ରବେଶ ।

ଦାସୀଦ୍ୱୟ ।—ରାମଚନ୍ଦ୍ର ଆସୁଛନ୍ତି ।

କୌଶ । ( ଅନୁମତିବ୍ୟଞ୍ଜକ ମସ୍ତକ ହଲାଇବାର । )

[ ଦାସୀଦ୍ୱୟର ପ୍ରସ୍ଥାନ ଓ ପରେ ରାମ ଓ ଲକ୍ଷ୍ମଣଙ୍କର ପ୍ରବେଶ ।]

କୌଶ ।—( ରାମ ଅଭିମୁଖେ ଧାବନ । )

ରାମ ଓ ଲକ୍ଷ୍ମଣ ।—( କୌଶଲ୍ୟାର ଚରଣବନ୍ଦନ । )

କୌଶ ।—( ରାମକୁ କୋଡ଼ରେ ନେଇ ତାଙ୍କର ମସ୍ତକ ଆଘ୍ରାଣ କରଣାନନ୍ତର ) ରାମ ! ତୁ ମହାତ୍ମା, ଧର୍ମଶୀଳ, ବୃଦ୍ଧ ରାଜର୍ଷିମାନଙ୍କର ଆୟୁ ଓ କୀର୍ତ୍ତି ଲାଭ କର ଆଉ କୁଳୋଚିତ ଧର୍ମ ଆଚରଣ କର । ତୋର ପିତା ନୃପତି ସତ୍ୟପ୍ରତିଜ୍ଞ ଦେଖ—ସେ ଧର୍ମାତ୍ମା ଆଜ ତୋତେ ଯୌବରାଜ୍ୟରେ ଅଭି-ଷେକ କରିବେ । ଏହି ଆସନରେ ବସ ଆଉ ଆଜ ଅଭିଷେକ ପରେ ମୋ ଘରେ ଭୋଜନ କରିବୁ । ଲକ୍ଷ୍ମଣ, ତୁ ବି ଆସି ଭାଇ ସଙ୍ଗରେ ଏହି-ଠାରେ ଖାଇବୁ । ତୁମେ ଦୁଇଭାଇ ଏକାତ୍ମା—ଯେମନ୍ତ ହରିହର ।—( ଆସନ ବଢ଼ାଇ ଦେବାର । )

ରାମ ।—( ଆସନ ସ୍ପର୍ଶ କରି କରଯୁଗଳରେ ହାତ ଯୋଡ଼ି ) ମା ! ମୁଁ ନିଶ୍ଚୟ ଜାଣୁଛି ଯେ ଆପଣଙ୍କର, ବୈଦେହୀର ଓ ଲକ୍ଷ୍ମଣର ଯେ ଦୁଃଖଜନକ ଅତ୍ୟନ୍ତ ଭୟାନକ ବ୍ୟାପାର ଉପସ୍ଥିତ ହୋଇଛି ତାହା ଆପଣ ଜାଣନ୍ତି ନାହିଁ । ମା ! ମୋତେ ଚଉଦବର୍ଷକାଳ ମୁନିଙ୍କ ପ୍ରାୟ ଆମିଷ ଛାଡ଼ି ଫଳ, ମୂଳ ଓ ମଧୁ ଖାଇ ନିର୍ଜ୍ଜନ ବନରେ ବାସ କରିବାକୁ ହେବ । ଏଥିପାଇଁ ମୁଁ ଏହିକ୍ଷଣି ଦଣ୍ଡକାରଣ୍ୟକୁ ଯିବି । ସେ ଯୋଗୁଁ ମୋର କୁଶାସନରେ ବସିବାର ସମୟ ହୋଇଛି—ଏ ଆସନରେ ଆଉ ମୋର ପ୍ରୟୋଜନ କିସ ? ପିତା ଭରତକୁ ଯୌବରାଜ୍ୟ ଦେଇ ମୋତେ ତପସ୍ୱୀ ପ୍ରାୟ କରି ଦଣ୍ଡକାରଣ୍ୟକୁ ନିର୍ବାସିତ କରୁଛନ୍ତି, ମୁଁ ଚଉଦବର୍ଷ କାଳ ବଳ୍କଳ ପିନ୍ଧି ଫଳ ମୂଳ ଖାଇ ଜୀବନଧାରଣ କରି ନିର୍ଜ୍ଜନବନରେ ବାସ କରିବି ।

କୌଶ ।—( ମୂର୍ଚ୍ଛିତା ହୋଇ ଭୂତଳେ ପତନ । )

ରାମ ।—ଭାଇ ! ମା ମୁହଁରେ ପାଣି ଦିଅ । ( କୌଶଲ୍ୟାଙ୍କୁ ଉଠାଇ ଧରି ତାଙ୍କ ଦେହରୁ ଧୂଳି ଝାଡ଼ି ଦେବାର । )

ଲକ୍ଷ୍ମ ।—( ସତ୍ୱର ହୋଇ କୌଶଲ୍ୟାଙ୍କ ମୁଖରେ ପାଣି ସିଞ୍ଚିଦେଇ ପୋଛି ଦେବାର । )

ସୁବେ ।—( ଉଠି ) ଏ କି କାଣ୍ଡ ?—ରାମ ରାଜା ନା ବନବାସୀ ! ମହାରାଜଙ୍କ କଥାକୁ ନମସ୍କାର—ଆଉ ଏ ରାଜ୍ୟରେ ରହି କି ହେବ । ଯେ ରାଜା ଏଭଳି ପ୍ରିୟପୁତ୍ରକୁ ବନକୁ ପଠାଇ ଦେଇ ପାରିଲେ ତାଙ୍କର କିଛି ଅସମ୍ଭବ ନୁହେ ! ହାୟ !, ହାୟ ! ଏହା କି ଆମ୍ଭକପାଳରେ ଥିଲା ଶୁଣିବାକୁ !—ହାୟ ! ରାମଚନ୍ଦ୍ରଙ୍କୁ ନ ଦେଖିଲେ କି ଆମ୍ଭେମାନେ ବଞ୍ଚି ପାରିବା ?—ହାୟ ରେ କପାଳ !—( କପାଳରେ ହାତ ମାରି କାନ୍ଦୁ କାନ୍ଦୁ ପ୍ରସ୍ଥାନ । )

କୌଶ ।—( ସଚେତନ ହୋଇ ଚାରିଦିଗରେ ଚାହିଁ )—ରାମ ରେ, ରାଣୀ-ମାନଙ୍କର ପୁଅ ହେଲା ନାହିଁ ବୋଲି ଗୋଟିଏ ଦୁଃଖ ଥାଏ—ଅନ୍ୟ ଦୁଃଖ ନାହିଁ ; ତୁ ଯେବେ ଖାଲି ମୋତେ ଦୁଃଖ ଦେବାପାଇଁ ମୋ ଗର୍ଭରୁ ଜନ୍ମ ହୋଇ ନ ଥାଆନ୍ତୁ ତେବେ ଅଁଟକୁଡ଼ୀ ବୋଲି ମୋର ଗୋଟିଏ ଦୁଃଖ ହୋଇଥାନ୍ତା ।—ଏତେ ଯାତନା ସହିବାକୁ ହୋଇ ନ ଥାନ୍ତା । ରାମ ! ମୁଁ ସ୍ୱାମୀ ଅନୁରାଗରୁ କେବେ କଲ୍ୟାଣ କି ସୁଖ ପାଇ ନାହିଁ, ପୁଅର ଅନୁରାଗରେ ସୁଖ ଭୋଗ କରିବି ଏଇୟା ମନେ କରି ଏତେଦିନ ବଞ୍ଚିଥିଲି ! ମୁଁ ବଡ଼ରାଣୀ ହୋଇକି ସାନରାଣୀଙ୍କଠାରୁ କଟୁକଥା ଶୁଣି ମୋର ଛାତି ଫାଟିଯାଏ—ମୋର ଯେପରି ଅପାର ଦୁଃଖ ସ୍ତ୍ରୀମାନଙ୍କର ତାହାଠାରୁ ଅଧିକ ଦୁଃଖ ଆଉ କି ହୋଇପାରେ ? ବାପ ! ତୁ ଥାଉଁ ଥାଉଁ ମୋତେ ଲାଞ୍ଛନା କରୁଛନ୍ତି—ତୁ ବିଦେଶକୁ ଗଲେ ମୋତେ କି କରି ନ ପାରନ୍ତି ?—ମୁଁ କେସ୍ତେ ମରିଯିବି ! ସ୍ୱାମୀ ମୋତେ ଅତ୍ୟନ୍ତ ଲାଞ୍ଛନା କରନ୍ତି—ମୁଁ ଚିରକାଳ ତାଙ୍କର ଅପ୍ରିୟ—ସେ ମୋତେ କୈକେୟୀର ଦାସୀପରି କି ତାଠାରୁଁ ନିକୃଷ୍ଟ କହନ୍ତି !—ହାୟ ! ଯେଉଁମାନେ ମୋର ସେବା କରନ୍ତି କିବା ମୋ ପଛରେ ଗୋଡ଼ାଇଥାନ୍ତି ସେମାନେବି କୈକେୟୀର ପୁଅକୁ ଦେଖିଲେ ମୋତେ କଥା କହନ୍ତି ନାହିଁ ! ପୁଅ ! ମୁଁ ଚୋଦ ବରଷରେ ଦୁର୍ଦ୍ଦଶାପନ୍ନା ହୋଇ କିପରି ଧନ୍ୟସୌଭାଗ୍ୟୋପନ୍ନା କଟୁଭାଷିଣୀ କୈକେୟୀର ମୁହଁ ଦେଖିବି ! —ରାମ ! ତୋର ଅଷ୍ଟମ ବୟସରେ ଉପନୟନ ହେଲା, ସେହିଦିନରୁ ଦୁଃଖର ଅବସାନ ହେବାର ଆକାଂକ୍ଷା କରୁ କରୁ ସତରବର୍ଷ ଅତିକ୍ରମ ହେଲାଣି—ମୁଁ ଏବେ ଏପରି ଶୀର୍ଣ୍ଣ ହୋଇ ଗଲିଣି ଯେ ଆଉ ଅଧିକକାଳ ସଉତୁଣୀମାନଙ୍କର ଗଞ୍ଜଣା ସହିବାକୁ ମନ ବାନ୍ଧି ପାରିବି ନାହିଁ ! ( କପାଳରେ କରାଘାତ କରି ) ହାୟ ରାମ ! ମୁଁ ତୋର ପୂର୍ଣ୍ଣଚନ୍ଦ୍ରବଦନ ନ ଦେଖି ଏକା ହୋଇ ପାନଜୀବନ୍ତା ଅବଲମ୍ବନ କରି କିପରି ବଞ୍ଚିବି !—ମୁଁ ତୋତେ ଉପବାସ, ଯୋଗ ଓ ନାନାପ୍ରକାର ପରିଶ୍ରମ କରି ଅତିଦୁଃଖରେ ବଢ଼ାଇଥିଲି—ମୋର ପୋଡ଼ା କପାଳକୁ ସବୁ ବିଫଳ ହେଲା ! ବର୍ଷାକାଳରେ ନଦୀରେ ଜଳ ହୋଇ ତାହାର କୂଳକୁ ଭାଙ୍ଗି ପକାଏ—ତୋର ବିଚ୍ଛେଦ ବାର୍ତ୍ତା ଶୁଣି ମୋର ହୃଦୟ ଭାଙ୍ଗି ଯାଉ ନାହିଁ—ରାମ ରେ, ମୋର ହୃଦୟ ବଜ୍ର କଠିନ ! ରାମ, ମୋତେ କେସ୍ତେ ଜଣା ଯାଉଛି ମୋର ମରଣ ନାହିଁ—ଯମାଳୟରେ ମୋ ପାଇଁ ସ୍ଥାନ ନାହିଁ, ତାହା ଥିଲେ ବେଦନପରିପୂର୍ଣ୍ଣା ହରିଣୀକୁ ବଳେ ହରଣ କଲାପ୍ରାୟ ଯମ କି ମୋତେ ନେଇ

ନ ଥାନ୍ତା !—ମୋର ହୃଦୟ ଅବିନାଶୀ—ମୋର ଦେହ ଲୁହାରେ ଗଢ଼ା ହୋଇଅଛି—ଏତେ ଦୁଃଖରେବି ମୋର ହୃଦୟ ଫାଟି ଗଲା ନାହିଁ—ଏତେ ଦୁଃଖରେବି ଦେହ ମାଟିରେ ପଡ଼ି ଚୂନ ହୋଇ ଗଲା ନାହିଁ ! ମୋତେ କଷ୍ଟ ଜଣା ଯାଉଛି—ଅକାଳରେ ମରଣ ହୁଏ ନାହିଁ ! ମୁଁ ପୁଅର ମଙ୍ଗଳ ମନାସି ଯେ ସମସ୍ତ ବ୍ରତ, ନିୟମ, ଦାନ, ତପସ୍ୟା କରିଥିଲି ତାହା ସବୁ ନିଶିମାଟିରେ ମଞ୍ଜି ପକାଇବା ପରି ନିଷ୍ଫଳ ହେଲା—ଏହି ମୋର ପରମ ଦୁଃଖ ! ରାମ ! ଯେବେ ଘୋର ଦୁଃଖରେ ଜଳିଯାଇ କେହି ଲୋକ ଆପଣା ଇଚ୍ଛାରେ ମରି ପାରୁଥାନ୍ତା ତାହାହେଲେ ତୋ ବିରହରେ ବଞ୍ଚନ୍ତା ଗୋରୁପରି ମୁଁ ଆଜି ମୂଢଲୋକଙ୍କୁ ଶୁଣଯାନ୍ତି—ବା ହବାର ନୁହେ ! ରେ ଚନ୍ଦ୍ରବଦନ ରାମ ! ଗୋରୁ ଦୁର୍ବଳ ହେଲେବି ବଳରେ ବାଛୁରି ପଛରେ ଗୋଡ଼ାଇଥାଏ—ସାମର୍ଥ୍ୟ ନ ଥିଲେବି ମୁଁ ବଳରେ ତୋ ପଛରେ ଗୋଡ଼ାଇବି—ତୋ ବିରହରେ ମୋର ଜୀବନରେ ପ୍ରୟୋଜନ ନାହିଁ—ତୋ ବିରହରେ ମୋର ବଞ୍ଚିବା ବୃଥା ! ( କ୍ରନ୍ଦନ । )

ଲକ୍ଷ୍ମ ।—( ଆପଣା ଲୁହ ପୋଛି ) ମା ! ଭାଇ ଯେ ଜଣେ ସ୍ତ୍ରୀଲୋକର କଥାରେ ରାଜଶ୍ରୀ ଛାଡ଼ି ବନକୁ ଯିବେ ଏହା ମୋ ମନକୁ ଆସୁ ନାହିଁ । ପିତା ବିପରୀତବୁଦ୍ଧି ଓ ବିଷୟାକୃଷ୍ଟଚିତ୍ତ; ବିଶେଷରେ ସେ ବୃଦ୍ଧ ହୋଇ ନିତାନ୍ତ କାମୁକ ହୋଇଛନ୍ତି—ସେ ସ୍ତ୍ରୀଲୋକର ଅନୁରୋଧରେ କି ନ କରି ନ ପାରନ୍ତି ? ମୁଁ ଭାଇଙ୍କର ଏପରି କିଛି ଦୋଷ ଦେଖୁ ନାହିଁ ଯହିଁରେ କି ସେ ରାଜ୍ୟରୁ ବହିଷ୍କୃତ ହୋଇ ବନବାସୀ ହୋଇ ପାରନ୍ତି । ଲୋକରେ ଏପରି ଜଣକୁ ସୁଦ୍ଧା ମୁଁ ଦେଖୁ ନାହିଁ ଯେ କି ପଛରେ ହେଲେ ଭାଇଙ୍କର ନିନ୍ଦା କରେ । ଯେଉଁ ମାନଙ୍କୁ ସେ ଅପରାଧ ହେତୁ ଗାଳି ଦିଅନ୍ତି କିମ୍ବା ଯେ ସବୁ ଲୋକେ ଇଙ୍କ ସହିତ ସର୍ବଦା ଶତ୍ରୁ ଆଚରଣ କରନ୍ତି ତାଙ୍କୁ ତାଙ୍କର ନିନ୍ଦା କରିବାକୁ ଦେଖାଯାଏ ନାହିଁ । କେଉଁ ଧାର୍ମିକପୁରୁଷ ଧର୍ମକୁ ଅବହେଳା କରି ରିପୁବଶରେ ଦେବତା ପ୍ରାୟ ଜିତେନ୍ଦ୍ରିୟ ପୁତ୍ରକୁ ଅକାରଣ ପରିତ୍ୟାଗ କରି ପାରନ୍ତି ? ପିତା ନିତାନ୍ତ ପିଲାଙ୍କପରି ଯାହା କହିଛନ୍ତି—ରାଜବୃତ୍ତି ସ୍ମରଣ କରି କେଉଁ ପୁତ୍ର ସେ କଥା ପ୍ରତିପାଳନ କରିବାକୁ ବାଞ୍ଛା କରିବ ?—( ରାମ ପ୍ରତି ) ଭାଇ ! ଲୋକେ ଏ ବିଷୟ ଜାଣି ପାରିବା ପୂର୍ବରୁ ଆପଣ ମୋ ସଙ୍ଗରେ ଏହି ରାଜ୍ୟ ଅଧିକାର କରନ୍ତୁ ! ମୁଁ ଧନୁ ଧରି ଆପଣଙ୍କ ପାଖରେ ଠିଆ ହେଲେ ଆପଣଙ୍କର କେହି କିଛି କରି ପାରିବ ନାହିଁ । ଆପଣଙ୍କ ବିପକ୍ଷରେ ଥିଲେ ମୁଁ ଗନ୍ଧର୍ବଙ୍କୁ

ସମୁଦାୟ ଅଯୋଧ୍ୟାକୁ ନିର୍ମନୁଷ୍ୟ କରିଦେବି—ଯେ ଭରତପକ୍ଷରେ ରହିବ ବା ଭରତର ମଙ୍ଗଳ ବାଞ୍ଛା କରିବ ମୁଁ ସମସ୍ତଙ୍କୁ ବଧ କରିବି ।—ନଟାଣ୍ଡ-ଙ୍କୁ ସମସ୍ତେ ପରିଭବ କରନ୍ତି । ଅଧିକ କି କହିବି ଗୁରୁ ଯେବେ କାର୍ଯ୍ୟାକାର୍ଯ୍ୟ ବୁଦ୍ଧି ହରାଇ ଅହଙ୍କାରବଶରୁ ବିପଥଗ ହୁଅନ୍ତି ତାଙ୍କୁ ଶାସନ କରିବା ଉଚିତ । ଅମ୍ଭମାନଙ୍କ ପିତା ଯେବେ କୈକେୟୀଙ୍କଥାରେ ପଡ଼ି ଭରତକୁ ରାଜ୍ୟ ଦେଇ ଅମ୍ଭମାନଙ୍କ ସଙ୍ଗେ ଶତ୍ରୁ ଆଚରଣ କରନ୍ତି ତେବେ ତାଙ୍କୁ ବଧ କରିବା କି ବନ୍ଧନ କରିବା କର୍ତ୍ତବ୍ୟ ।—ଭାଇ ! ପିତା କେଉଁ ବଳ ବା କେଉଁ ହେତୁରୁ ଆପଣଙ୍କର ନ୍ୟାଯ୍ୟପ୍ରାପ୍ତ ବିଷୟକୁ କୈକେୟୀଙ୍କୁ ଦେବାକୁ ବାଞ୍ଛା କରିଛନ୍ତି ? ଆପଣଙ୍କ ସହିତ ଆଉ ମୋ ସହିତ ଶତ୍ରୁତା କରି ଭରତକୁ ରାଜ୍ୟ ପ୍ରଦାନ କରିବାକୁ କି ତାଙ୍କର ଶକ୍ତି ଅଛି ? (କୌଶଲ୍ୟାପ୍ରତି ) ମା ! ମୁଁ ସତ୍ୟ, ଦାନ, ଧନୁ, ଇଷ୍ଟର ଶପଥ କରି କହୁଛି ମୁଁ ସର୍ବାନ୍ତଃକରଣରେ ଭାଇଙ୍କର ଅନୁରକ୍ତ । ମା, ସେ ଯେବେ ଜ୍ୱଳନ୍ତ ଅନଳରେ କିମ୍ବା ଅରଣ୍ୟରେ ପ୍ରବେଶ କରିବେ ନିଶ୍ଚୟ ଜାଣନ୍ତୁ ମୁଁ ଆଗେ ତହିଁରେ ପ୍ରବେଶ କରିବି । ( ଲଗୋବନ୍ତ ହୋଇ ହାତ ଉଠାଇ ) ଆପଣ ଓ ଭାଇ ମୋର ପରାକ୍ରମ ଦେଖନ୍ତୁ—ସୂର୍ଯ୍ୟ ଯେପରି ପ୍ରଭୂତ ଅନ୍ଧକାର ବିନାଶ କରନ୍ତି ସେହିପରି ମୁଁ ଆପଣଙ୍କ ଦୁଃଖ ନାଶ କରିବି—ବୃଦ୍ଧ, ବାଳସ୍ୱଭାବସମ୍ପନ୍ନ, ମନୋଗ୍ରସ୍ତ, କୈକେୟୀଠାରେ ଆସକ୍ତମନା ଓ ଅମ୍ଭମାନଙ୍କ ପକ୍ଷେ ନିତାନ୍ତ କୃପଣ ପିତାଙ୍କୁ ମୁଁ ଏହିକ୍ଷଣି ହାଣି ପକାଇବି ।

କୌଶ ।—(କାନ ବାନ୍ଧି ) ବସ ଥାରେ ଲକ୍ଷ୍ମଣ—ତୁ ଚୁପ ହୋଇଥା—( ରାମପ୍ରତି ) ବତ୍ସ ! ତୁ ଲକ୍ଷ୍ମଣର କଥା ଶୁଣିଲୁଟି ? ତୋର ଯାହା କରିବା ଉଚିତ ।—ମୁଁ ଶୋକରେ ନିତାନ୍ତ ସନ୍ତାପିତ ହେଉଛି—ମୋର ସପତ୍ନୀର କଥା ଶୁଣି ମୋତେ ଛାଡ଼ି ତୋର ବନକୁ ଯିବା ଉଚିତ ନୁହେ । ତୋତେ ସମସ୍ତ ଧର୍ମ ଜଣାଅଛି । ଯେବେ ତୋର ଧର୍ମାନୁଷ୍ଠାନ କରିବାକୁ ବାଞ୍ଛା ଥାଏ ତେବେ ଏଠାରେ ଥାଇ ମୋର ସେବା କରି ତୁ ଶ୍ରେଷ୍ଠଧର୍ମ ଅନୁଷ୍ଠାନ କର ।—ଦେଖ ସୁପୁତ୍ର କାଶ୍ୟପ ଘରେ ଥାଇ ନିୟତ ମାତୃସେବା କରି ସ୍ୱର୍ଗକୁ ଗଲେ ।—ପିତା ତୋର ଯେରୂପ ପୂଜନୀୟ, ତହୁଁ ଅଧିକ ମୁଁ ପୂଜା ପାଇବାର ଯୋଗ୍ୟ ।—ମୁଁ ତୋତେ ବନକୁ ଯିବାକୁ ଅନୁମତି ଦେଉ ନାହିଁ—ତୋର ବନକୁ ଯିବା ଉଚିତ ନୁହେ । ରାମ ! ତୋ ସହିତ ତୃଣ ଭକ୍ଷଣ କରିବାକୁ ଶ୍ରେୟ ମାତ୍ର ତୋର ବିରହରେ ସୁଖ କି ଜୀବନ ନାହିଁ ରେ ପ୍ରତ୍ୟାକଳ ନାହିଁ !—ମୋତେ ଶୋକରେ ବ୍ୟାକୁଳ କରି ତୁ ବନକୁ ଗଲେ

ମୁଁ ବଞ୍ଚି ପାରିବି ନାହିଁ—ତୁ ଅନାହାରବ୍ରତ କରିବୁ, ତା ହେଲେ ତୁ ସମୁଦ୍ର-
ପ୍ରାପ୍ତ ବ୍ରହ୍ମହତ୍ୟାରୂପ ଅଧର୍ମରୁ ମହାଦୁଃଖ ପାଇବୁ !

ରାମ ।—ମା, ପିତୃବାକ୍ୟ ଲଙ୍ଘିବାକୁ ମୋର ସାମର୍ଥ୍ୟ ନାହିଁ—ସୁତରାଂ ବନକୁ
ଯିବାପାଇଁ ମୋର ବାଞ୍ଛା ହେଉଛି । ମୁଁ ଆପଣଙ୍କର ଗୋଡ଼ତଳେ ପଡ଼ି
କହୁଛି ମୋ ପ୍ରତି ସନ୍ତୁଷ୍ଟ ହେଉନ୍ତୁ । କଣ୍ଡୁବ୍ରତାନୁଷ୍ଠାୟୀ ଅତିବଡ଼
କଣ୍ଡୁ ଋଷି ଧର୍ମ ଜାଣି ସୁଦ୍ଧା ପିତୃବାକ୍ୟ ପାଳିବାନିମିତ୍ତ ଗୋବଧ କରିଥିଲେ;
ଆମ୍ଭମାନଙ୍କର ପୂର୍ବପୁରୁଷ ସଗରରାଜାଙ୍କର ପୁତ୍ରମାନେ ପିତୃ ଆଦେଶରେ
ପୃଥିବୀ ଖୋଳି ପ୍ରଶସ୍ତ ମରଣ ପ୍ରାପ୍ତ ହେଲେ; ଅନ୍ତୁରି ଯମଦଗ୍ନି-ନନ୍ଦନ
ରାମ ପିତୃ-ଆଜ୍ଞାରେ ଅରଣ୍ୟରେ ଆପଣାର ମାତା ରେଣୁକାଙ୍କୁ ସ୍ୱୟଂ ପରଶୁ-
ଦ୍ୱାରା ହାଣି ପକାଇଥିଲେ । ମା, ସେମାନେ ଓ ଆଉ ଆଉ ଦେବତୁଲ୍ୟ
ସଦାଗ୍ରହୀ ବ୍ୟକ୍ତିମାନେ ଅନାଦରରେ ପିତୃବାକ୍ୟ ପାଳିଥିଲେ । ମୁଁ ମଧ୍ୟ
ପିତାଙ୍କର ହିତକର ଆଦେଶ ପ୍ରତିପାଳନ କରିବି । ମୁଁ ଏହା କହୁ ପିତୃ-
ଶାସନ ପାଳୁ ନାହିଁ । ପୂର୍ବେ ପ୍ରାଣିମାନଙ୍କର ପିତୃବାକ୍ୟପାଳନରୂପ ଧର୍ମ
ଅଭିମତ ଥିଲା । ସେମାନେ ଏହି ଧର୍ମପଥରେ ଯାଇଛନ୍ତି—ମୁଁ ବି ଯାଉଛି ।
ଯାହା କେବେ ହୋଇ ନାହିଁ ଏପରି କିଛି ନୂତନ ଧର୍ମ ମୁଁ ଆଚରଣ କରୁ-
ନାହିଁ । ମା, ପିତୃବାକ୍ୟ ପାଳନ କରି କୌଣସି ବ୍ୟକ୍ତି ଧର୍ମପରିଭ୍ରଷ୍ଟ ହୁଏ-
ନାହିଁ । ଭୂମଣ୍ଡଳରେ ସମସ୍ତଙ୍କର ପିତୃବାକ୍ୟ ପାଳନ କରିବା ଉଚିତ,
ଏଥିପାଇଁ ମୁଁ କରୁଛି—କିଛି ଅକାର୍ଯ୍ୟ କରିବାକୁ ଯାଉ ନାହିଁ ।—(ଲକ୍ଷ୍ମଣ
ପ୍ରତି ) ଭାଇ ଲକ୍ଷ୍ମଣ ! ତୋର ମୋଠାରେ ଯେରୂପ ଦୃଢ଼ପ୍ରୀତି ଆଉ
ତୋର ବଳ, ବିକ୍ରମ, ଅକ୍ଷୋଭନୀୟ ତେଜ ମୋତେ ସମସ୍ତ ଜଣାଅଛି ।
ମୋର ସତ୍ୟ ଓ ଶାନ୍ତ ବିଷୟକ ଅଭିପ୍ରାୟ ନ ଜାଣି ମାଙ୍କର ଦୁଃଖ ହୋଇଛି
ମାତ ଭୂତ ସବୁ ଜାଣୁ, କାହିଁକି ଏପରି ହେଉଛୁ ? ଇହଲୋକରେ
ଧର୍ମ ପରମପୁରୁଷାର୍ଥ । ଧର୍ମରେ ସତ୍ୟ ପ୍ରତିଷ୍ଠିତ ଅଛି । ତେଣୁ ପିତୃବାକ୍ୟ ମଧ୍ୟ
ଧର୍ମସମନ୍ୱିତ—ଏଣୁ ତାହା ଅବଶ୍ୟ ଅନୁଷ୍ଠେୟ । ପିତାଙ୍କର, ମାତାଙ୍କର
ବ୍ରାହ୍ମଣଙ୍କର ବାକ୍ୟ ଏବଂ ପ୍ରତିଜ୍ଞାତ ବିଷୟର ଅନ୍ୟଥା କରିବା ଧାର୍ମିକମାନ-
ଙ୍କର ଉଚିତ ନୁହେ—ଏଣୁ ମୁଁ ପିତୃଶାସନ ଅତିକ୍ରମ କରି ପାରିବି ନାହିଁ ।
ପିତାଙ୍କ କଥା ଅନୁସରି କୈକେୟୀଦେବୀ ମୋତେ ସେପରି ଆଦେଶ କରିଛନ୍ତି ।
ଭାଇ ତୁ କ୍ଷତ୍ରିୟୋଚିତ ଅକାର୍ଯ୍ୟବୁଦ୍ଧି ଓ କ୍ରୂରତା ତ୍ୟାଗ କରି ପ୍ରକୃତ
ଧର୍ମ ଆଶ୍ରୟ କର ଏବଂ ମୋର ବୁଦ୍ଧିର ଅନୁଗାମୀ ହୋ ।—( କରଯୋଡ଼ି
କରି ଏବଂ ନତମସ୍ତକ ହୋଇ ମାତାଙ୍କ ପ୍ରତି ) ମା, ମୁଁ ପ୍ରାଣର ଶପଥ କରି

କହୁଛନ୍ତି ମୁଁ ବନକୁ ଯିବି—ମୋତେ ଅନୁମତି ଦେଉନ୍ତୁ, ମୋର ମାଙ୍ଗଲ୍ୟ-କର୍ମର ଅନୁଷ୍ଠାନ କରନ୍ତୁ । ଯଯାତି ରାଜା ପୂର୍ବେ ସ୍ୱର୍ଗ ପରିତ୍ୟାଗ କରି ପୁନର୍ବାର ସ୍ୱର୍ଗକୁ ଯାଇଥିଲେ, ମୁଁ ବି ସେହିପରି ପ୍ରତିଜ୍ଞାରୁ ଉତ୍ତୀର୍ଣ୍ଣ ହୋଇ ପୁଣି ଅଯୋଧ୍ୟାକୁ ଆସିବି ।—ମା, ଆପଣ ଶୋକ କରନ୍ତୁ ନାହିଁ, ହୃଦୟରୁ ଶୋକ ସମ୍ବରଣ କରନ୍ତୁ—ମୁଁ ବନବାସ କରି ପିତୃବାକ୍ୟ ପାଳି ପୁଣି ଏଠାକୁ ଆସିବି । ଆପଣ, ସାନମା, ସୀତା, ଲକ୍ଷ୍ମଣ, ମୁଁ—ସମସ୍ତଙ୍କର ପିତାଙ୍କ ଆଦେଶ ପାଳିବା ସନାତନଧର୍ମ । ମା, ଆପଣ ମନର ଦୁଃଖ ମନରେ ମାରି ମୋର ରାଜ୍ୟାଭିଷେକର ଆୟୋଜନ ନିବର୍ତ୍ତାଇ ମୋର ବନବାସାଭିଳାଷିଣୀ ଧର୍ମବୁଦ୍ଧିର ଅନୁବର୍ତ୍ତନ କରନ୍ତୁ ।

କୌଶ ।—(ପୁନର୍ମୂର୍ଚ୍ଛା ।)

ରାମ ।—ନୀର ପାଣି ଆଣ । ( ଲକ୍ଷ୍ମଣ ସାହାଯ୍ୟରେ ମାତାଙ୍କର ମୂର୍ଚ୍ଛା ହରଣ କରି ) ହାୟ ! ତୋର ପରାକ୍ରମ, ମୋପ୍ରତି ତୋର ଯେରୂପ ଭକ୍ତି ତାହା ମୋତେ ବିଲକ୍ଷଣ ଜଣାଅଛି—ତୁ ମାଙ୍କ ପରି ଅଭିପ୍ରାୟ ବୁଝି ନ ପାରି ମୋତେ ବ୍ୟଥିତ କରୁଛୁ । ଯେ ଧର୍ମ, ଅର୍ଥ ଓ କାମ ଧର୍ମ-ଫଳଭୂତ ଲୌକିକ ସୁଖରହେତୁ ତାହା ସବୁ ଧର୍ମର ଅନ୍ତର୍ଗତ—ଭାର୍ଯ୍ୟା ବଶୀଭୂତା ହୋଇ ଧର୍ମ, ଅଭିମତା ହୋଇ କାମ ଆଉ ପୁତ୍ରବତୀ ହୋଇ ଅର୍ଥ ଉତ୍ପାଦନ କଲା-ପ୍ରାୟ ଧର୍ମ ମଧ୍ୟ ଧର୍ମ, କାମ ଓ ଅର୍ଥ ଉତ୍ପାଦନ କରେ । ଯେଉଁ କର୍ମମାନଙ୍କରେ ଧର୍ମ, ଅର୍ଥ, କାମ ତିନି ବିଦ୍ୟମାନ ନାହିଁ ତହିଁମଧ୍ୟରୁ ଯହିଁରେ କେବଳ ଧର୍ମ ଅଛି ତାହା କରିବା ଉଚିତ କାରଣ ଯେଉଁ କର୍ମମାନଙ୍କରେ କେବଳ ଅର୍ଥ ଅଛି ତାହା କଲେ ଲୋକରେ ବିଦ୍ୱେଷଭାଜନ ହେବାକୁ ହୁଏ ଆଉ ଯହିଁରେ କେବଳ କାମ ଅଛି ତାହା କଲେ ଲୋକେ ପ୍ରଶଂସା କରନ୍ତି ନାହିଁ । ଯେ ପିତା ଅଥଚ ବୃଦ୍ଧ, ଗୁରୁ ଓ ରାଜା ସେ କାମ ବା କ୍ରୋଧ ବା ହର୍ଷବଶରୁ ଯାହା କରିବାକୁ କହିବେ ତାହା କେଉଁ ସାଧୁବ୍ୟକ୍ତି ଧର୍ମ ଉପେକ୍ଷା କରି ନ କରିବ ? ମୁଁ ପିତାଙ୍କର ପ୍ରତିଜ୍ଞା ଯଥାନ୍ୟାୟରେ ପ୍ରତି-ପାଳନ ନ କରି ରହି ପାରିବି ନାହିଁ । ସେ ଆମ୍ଭମାନଙ୍କର ଆଦେଶକର୍ତ୍ତା ଗୁରୁ ଆଉ ମାଙ୍କର ସ୍ୱାମୀ, ଧର୍ମ ଓ ଗତି । ସେହି ସତ୍ୟମାର୍ଗାବଲମ୍ବୀ ଧର୍ମରାଜ ବଞ୍ଚି ଥାଉଁ ଥାଉଁ ମା କିପରି ମୋସଙ୍ଗରେ ସାମାନ୍ୟା ବିଧବାନାରୀ ପରି ଏଠାରୁ ଯାଇ ପାରିବେ ?

କୌଶ ।—( ସଂଜ୍ଞାଲାଭ କରି ରୋଦନସ୍ୱରେ ) ହା କଷ୍ଟ !! ହା ଦୁଃଖ !! ମୁଁ ହତଭାଗିନୀ ! ପାପୀୟସୀ !! ରାମ ! ତୋର ବାପ ତୋର ପୂଜନୀୟ—

ମୁଁ ତ ତୋତେ ପାଳି ନାହିଁ—ମୁଁ ତ ତୋତେ ସ୍ନେହ କରିନାହିଁ !—ମୁଁ ତ ତୋର ପୂଜନୀୟା । ମୁଁ ତୋତେ ଯିବାକୁ ଅନୁମତି ଦେବି ନାହିଁ ! ତୁ ଗଲେ ମୋହର ଅତ୍ୟନ୍ତ ଦୁଃଖ ହବ—ମୋତେ ଛାଡ଼ି ତୋର ବନକୁ ଯିବା ଉଚିତ ନୁହେଁ । ତୁ ମୋର ଧନ, ତୁ ମୋର ପ୍ରାଣ—ତୋ ବିରହରେ ମୋର ଜୀବନ, ବନ୍ଧୁ ବାନ୍ଧବ, ଲୋକଜନ, ପିତୃଯଜ୍ଞ, ଅମୃତ—କାହିଁରେ ପ୍ରୟୋଜନ ନାହିଁ । ତୋହ ନିକଟରେ ମୁଁ ମୁହୂର୍ତ୍ତକ ଥିଲେ ମୋର ସାରସଂସାର ଲାଭ ହୁଏ !

ରାମ ।—ମାତଃ ଆପଣ ମୋତେ ବନକୁ ଯିବାପାଇଁ ଅନୁମତି ଦେଉନ୍ତୁ । କାର୍ଯ୍ୟକ୍ଷେତ୍ରରେ ଯହିଁରେ ମୁଁ ଯଥାର୍ଥ ସତ୍ୟାଚରଣଦ୍ୱାରା ସ୍ୱର୍ଗଲାଭ କରି ପ୍ରାୟ ପୁନର୍ବାର ଏଠାକୁ ଫେରି ଆସେଁ ଏରୂପ ମାଙ୍ଗଲ୍ୟ କାର୍ଯ୍ୟର ଅନୁଷ୍ଠାନ କରନ୍ତୁ !—ମା ମନୁଷ୍ୟଜୀବନ ନିତାନ୍ତ ଅଚିରସ୍ଥାୟୀ, ଏଣୁ କେବଳ ରାଜ୍ୟପାଇଁ ମୁଁ ମହାଫଳ ଯଶ ଛାଡ଼ି ନ ପାରେଁ—ମୁଁ ଅଧର୍ମାନୁସାରେ ତୁଚ୍ଛ ପୃଥିବୀ ବ ରାଜ୍ୟ ପ୍ରାର୍ଥନା ନ କରେଁ ।

ଲକ୍ଷ୍ମ ।—(କ୍ରୋଧରେ ଚକ୍ଷୁ ବିସ୍ତାରିତ କରି ଅଧୈର୍ଯ୍ୟଭାବରେ ଦୀର୍ଘନିଶ୍ୱାସ ତ୍ୟାଗ କରି ଚତୁର୍ଦ୍ଦିଗ୍ ନିରୀକ୍ଷଣ ।)

ରାମ ।—ଭାଇ ଲକ୍ଷ୍ମଣ ! ତୁ ଧୈର୍ଯ୍ୟାବଲମ୍ବନ ଓ ଶୋକ ଏବଂ କ୍ରୋଧ ପରିତ୍ୟାଗ କରି ଏ କାର୍ଯ୍ୟକୁ ଅପମାନଜନକ ମନେ ନ କରି ସନ୍ତୁଷ୍ଟ ହୋ । ମୋର ଅଭିଷେକ ପାଇଁ ଯେ ଦ୍ରବ୍ୟସବୁ ସଂଗୃହୀତ ହୋଇଛି ତାହା ବିସର୍ଜନ କର—ମୋର ଅଭିଷେକ ହେବୁ ତୋର ଯେ ଉତ୍ସାହ ତାକୁ ମୋର ବନବାସ ଆଡ଼କୁ ଫେରାଇଦେ । ମା ଯେପରି ମୋର ବନଗମନବୃତ୍ତାନ୍ତରେ ଶଙ୍କା ନ କରନ୍ତି ସେପରି କର—ମୁଁ ତାଙ୍କର ଶଙ୍କାଜନିତ ଆନ୍ତରିକ ଦୁଃଖ ମୁହୂର୍ତ୍ତେ ସୁଦ୍ଧା ଦେଖିବାକୁ ନ ଚାହେଁ । ମୁଁ କେବେ ପିତାମାତାଙ୍କର ଅପ୍ରିୟ କରି ନାହିଁ । ନିରନ୍ତର ସତ୍ୟବାଦୀ, ସତ୍ୟପ୍ରତିଜ୍ଞ, ସତ୍ୟପରାକ୍ରମ ପିତା ପରଲୋକ-ଭୟଜନିତ ଅସତ୍ୟରୁ ଭୀତ ହୋଇଛନ୍ତି—ସେ ନିର୍ଭୟ ହେଉନ୍ତୁ । ଅଭିଷେକର ଆୟୋଜନ ନିବର୍ତ୍ତିତ ନ ହେଲେ ପିତାଙ୍କର ଓ ମୋର ବାକ୍ୟ ସତ୍ୟ ହେବ ନାହିଁ ଏରୂପ ଆଶଙ୍କାରୁ ତାଙ୍କର ମନସ୍ତାପ ହୋଇ ପାରେ । ଏଣୁ, ଭାଇ, ଅଭିଷେକର ଆୟୋଜନ ନିବର୍ତ୍ତିତ କରି ମୁଁ ଶୀଘ୍ର ଏଠାରୁ ବନକୁ ଯିବାର ବାଞ୍ଛା କରେଁ । ମହିଷୀ ମା ମୋତେ ବନକୁ ପଠାଇ କୃତକାର୍ଯ୍ୟ ହୋଇ ଭରତକୁ ରାଜ୍ୟରେ ଅଭିଷିକ୍ତ କରନ୍ତୁ—ମୁଁ ଚର୍ମକୌପୀନ ପିନ୍ଧି ଜଟାଧାରୀ ହୋଇ

ବନକୁ ଗଲେ ମହିଷୀ ମାର ମନରେ ସୁଖ ହେବ। ବୃତ୍ତାନ୍ତ ମୋର ପ୍ରାପ୍ତ ରାଜ୍ୟର ନିବୃତ୍ତି ଓ ବନଗମନର ହେତୁ। ମହିଷୀ ମାର ଏ ଭାବ ବୃତ୍ତାନ୍ତବିହିତ ନ ହେଲେ ତାଙ୍କର କି ମୋତେ ପୀଡ଼ା ଦେବାକୁ କେବେ ଅଭିଳାଷ ହୋଇଥାନ୍ତା ? ତୁ ଜାଣୁ ଯେ ମୋର ଯେପରି ସମସ୍ତ ମାତାଙ୍କଠାରେ ସମାନଭକ୍ତି ମହିଷୀ ମାର ମଧ୍ୟ ସେପରି ଆପଣା ପୁତ୍ର ଓ ମୋଠାରେ ସମାନ ସ୍ନେହ ଥିଲା। ସେ ରାଜାଙ୍କୁ ମୋର ଅଭିଷେକ- ନିବୃତ୍ତି ଓ ବନଗମନସମ୍ବନ୍ଧରେ ଯେସବୁ ଦୁର୍ବାକ୍ୟ କହିଅଛନ୍ତି ଦୈବବଶତା ଭିନ୍ନ ହୋଇପାରେ ?—ମହିଷୀ ମା ଗୁଣବତୀ ରାଜନନ୍ଦିନୀ ହୋଇ ପ୍ରାକୃତସ୍ତ୍ରୀ ଥାଇଁ ନ ସାମାନ୍ୟ ରମଣୀପରି ସ୍ୱାମିସନ୍ନିଧାନରେ ମୋର ପୀଡ଼ାଜନକ କଥା କହିପାରନ୍ତେ ? ନିଶ୍ଚୟ ତାଙ୍କଠାରେ ଆଉ ମୋଠାରେ ଦୈବବଶପର୍ଯ୍ୟୟ ଘଟିଛି। ଯାହା ଅଚିନ୍ତନୀୟ, ଯାହାର ପ୍ରଭାବ କେହି ପ୍ରତିହତ କରିପାରେ ନାହିଁ ତାହା ଦୈବ। ସୁଖ, ଦୁଃଖ, ଭୟ, କ୍ରୋଧ, ଲାଭ, ଅଲାଭ, ଉତ୍ପତ୍ତି, ବିନାଶ ଓ ଆଉ ଯାହା ଦେଖୁଛ ସବୁ ଦୈବର କାର୍ଯ୍ୟ। ଦୈବ ସଙ୍ଗରେ କିଏ ଯୁଝିବ ? ଉଗ୍ରତପା ଋଷିମାନେ ଦୈବପୀଡ଼ିତ ହେବାରୁ ସିନା କାମକ୍ରୋଧାଦିର ଅଧୀନ ହୋଇ ଭ୍ରଷ୍ଟ ହୁଅନ୍ତି। ଯାହା ସଙ୍କଳ୍ପିତ ନ ହୋଇ ଆରମ୍ଭକାର୍ଯ୍ୟ ନିବାରିତ କରି ଅକସ୍ମାତ୍ ଉପସ୍ଥିତ ହୁଏ ତାହା ଦୈବର କାର୍ଯ୍ୟ। ଅଭିଷେକରେ ବ୍ୟାଘାତ ଘଟିଲେ ହେଁ ମୋର ଏହି ତତ୍ତ୍ୱଜ୍ଞାନ ହେତୁ ପରିତାପ ହେଉନାହିଁ—ତୁ ସେହି ଜ୍ଞାନର ଅନୁଗାମୀ ହୋଇ ପରିତାପ ତ୍ୟାଗ କରି ମୋର ଅଭିଷେକର ଆୟୋଜନ ନିବାରଣ କର। ଭାଇ, ମୋର ଅଭିଷେକପାଇଁ ଯେସବୁ ସଜଳଘଟ ଆହୃତ ହୋଇଛି ତଦ୍ୱାରା ମୋର ତାପସବ୍ରତ-ସ୍ନାନ ହେବ।—ନା, ରାଜ୍ୟାଭିଷେକସଂଯୁକ୍ତ ଦ୍ରବ୍ୟରେ ମୋର କି ହେବ ? ମୁଁ ସ୍ୱୟଂ ପାଣି କାଢ଼ି ବ୍ରତସ୍ନାନ କରିବ।—ହଁ, ଏ ବିଷୟରେ ସନ୍ତାପ କରନ୍ତୁ ନାହିଁ—ବର୍ତ୍ତମାନ ମୋପକ୍ଷରେ ବନବାସ ମହାଫଳଜନକ। ମୋର ରାଜ୍ୟନାଶ ହେଲୁ ତୁ ମହିଷୀ ମାଙ୍କୁ ନିନ୍ଦିବୁ ନାହିଁ—ତୁ ଜାଣି ରଖ ଦୈବ ଅପ୍ରତିହତପ୍ରଭାବ ଏବଂ ତହିଁବର୍ତ୍ତୀ ନିୟୋଜିତ ହୋଇ ଲୋକେ ପରର ଅନିଷ୍ଟାଚରଣ କରନ୍ତି।

ଲକ୍ଷ୍ମ।—( ପୂର୍ବପ୍ରାପ୍ତ ହୋଇ ଗ୍ରୀବାଭଙ୍ଗୀ ହେତୁତଃ କ୍ରୁଦ୍ଧସ୍ୱରରେ ) ଧର୍ମହାନିର ସମ୍ଭାବନା ଆଉ ଲୋକନାପର ଆଶଙ୍କାରୁ ଆପଣଙ୍କର ବନକୁ ଯିବାପାଇଁ ଯେ ଆଗ୍ରହ ହୋଇଛି ତାହା ନିତାନ୍ତ ଭ୍ରାନ୍ତିମୂଳକ—ଭ୍ରାନ୍ତ ନ ହେଲେ ଆପଣଙ୍କ ଭଳି ଦକ୍ଷ ଓ ବିଶ୍ୱଶ୍ରେଷ୍ଠମାନେ ଦକ୍ଷତାବିହୀନ ଲୋକଙ୍କ—

ପ୍ରାଜ୍ଞ ନ ଏପରି କହି ପାରନ୍ତି ? ଯେ ଦୈବର ସ୍ୱୟଂ କୌଣସି କାର୍ଯ୍ୟ କରିବାର ସାମର୍ଥ୍ୟ ନାହିଁ, ଯେ ସବୁକାର୍ଯ୍ୟ ସାଧନନିମିତ୍ତ ପୁରୁଷକାରର ଅପେକ୍ଷା କରେ ସେ ଦୈବ ଏମନ୍ତ କି ପଦାର୍ଥ ଯେ ଆପଣ ତାହାର ପ୍ରଶଂସା କରୁଛନ୍ତି ? ଜଗତରେ ଯେ ଭଣ୍ଡ ଅଛନ୍ତି ଏହା କି ଆପଣଙ୍କୁ ଜଣା-ନାହିଁ ? ପିତା ଓ ମଝିଁଆ ମା ଭଣ୍ଡ—ସେମାନଙ୍କପ୍ରତି ଆପଣ କାହିଁକି ପାପାଶଙ୍କା କରୁ ନାହାନ୍ତି ? ସେମାନେ ସ୍ୱକାର୍ଯ୍ୟ ସାଧିବାପାଇଁ ପ୍ରବଞ୍ଚନାକ୍ରମେ ନାନା ଦୋଷରେ ଆପଣଙ୍କୁ ତ୍ୟାଗ କରିବାର ଅଭିଳାଷ କରିଛନ୍ତି—ଯେବେ ଆଗହୁଁ ସେମାନଙ୍କର ଏପରି ଅଭିଳାଷ ନ ଥାନ୍ତା ତେବେ ଆଗହୁଁ ବରପ୍ରଦାନ କରିଥାନ୍ତେ—ତାହାବି ଉପଯୁକ୍ତ ହୋଇଥାନ୍ତା । ଏବେ ଆପଣଙ୍କୁ ପରିତ୍ୟାଗ କରି ଅପରକୁ ଅଭିଷେକ କରିବାର ଯେ ଉଦ୍ୟୋଗ ହେଉଛି ଏଥିରେ ସମସ୍ତଙ୍କର ବିଦ୍ୱେଷ ହେବ—ମୁଁ ଯେ ତାହା ସହିବାକୁ ଚେଷ୍ଟା କରୁ ନାହିଁ ମୋତେ କ୍ଷମା କରିବେ । ଯେ ଧର୍ମରୁ ଆପଣଙ୍କର ସନ୍ଦେହଜାତ ହୋଇଛି ଏବଂ ଯହିଁରେ ଆପଣଙ୍କର ମୋହ ଉପସ୍ଥିତ ହୋଇଛି ସେ ଧର୍ମ ମୋର ଦ୍ୱେଷ୍ୟ । ଆପଣ କ୍ଷମତାଶାଳୀ ହୋଇ କିପରି ସ୍ତ୍ରୀବଶବର୍ତ୍ତୀ ପିତାର ଲୋକନିନ୍ଦିତ ଅଧର୍ମବାକ୍ୟ ପାଳିବେ ? ଆପଣ ଯେ ସେମାନଙ୍କର କପଟକୃତ ଅଭିଷେକବ୍ୟାଘାତରୂପ ଭେଦ ବୁଝି ନ ପାରି ଗର୍ହିତ ଧର୍ମାସକ୍ତ ହୋଇଛନ୍ତି ଏଥିରେ ମୋର ନିତାନ୍ତ ଦୁଃଖ ହେଉଛି । ଅହଙ୍କାରୀ କାମବୃତ୍ତି ସେହି ପିତାମାତାରୂପ ଶତ୍ରୁମାନଙ୍କର ଅଭିଳାଷ ପୂରଣ କରିବାର କଥା ଆପଣଙ୍କୁ ଛାଡ଼ି ଜଗତରେ କେହି ମନରେ ସୁଦ୍ଧା କରିବ ନାହିଁ—ଆପଣଙ୍କର ସେରୂପ ଧର୍ମସ୍ପୃହା ସମସ୍ତଲୋକନିନ୍ଦିତ । ଦୈବବଶରୁ ପିତାମାତାଙ୍କର ସେପରି ବୁଦ୍ଧି ହୋଇଥିବାର ଯେବେ ଆପଣ କଳ୍ପନା କରିଥାନ୍ତି—ତାହାବି ଉପେକ୍ଷା କରନ୍ତୁ—ତା ମୋ ମନକୁ ରୁଚେ ନାହିଁ । ହୀନବୀର୍ଯ୍ୟ ଜ୍ଞାନଶୂନ୍ୟ ବ୍ୟକ୍ତିମାନେ ଦୈବର ଅନୁଗାମୀ ହୋଇଥାନ୍ତି—ଯେଉଁମାନଙ୍କର ଶୌର୍ଯ୍ୟ ବୀର୍ଯ୍ୟାଦି ଲୋକବିଖ୍ୟାତ ସେମାନେ ଦୈବର ଉପାସନା କରନ୍ତି ନାହିଁ । ଯେଉଁ ପୁରୁଷର ପୌରୁଷଦ୍ୱାରା ଦୈବକୁ ବାଧା ଦେବାର କ୍ଷମତା ଅଛି ସେ ଦୈବନିବନ୍ଧନ ବିପନ୍ନ ହୋଇ ସୁଦ୍ଧା ଅବସନ୍ନ ହୁଏ ନାହିଁ । (ସମ୍ମୁଖରେ ଜଣହୋଇ) ଆଜ ଦୈବ ଓ ମନୁଷ୍ୟର କ୍ଷମତା ପ୍ରକାଶ ପାଇବ । ଆଜ ସମସ୍ତେ ଦୈବ ଓ ମନୁଷ୍ୟର କ୍ଷମତା ଦର୍ଶନ କରନ୍ତୁ । ଯେଉଁ ଦୈବଦ୍ୱାରା ଆପଣଙ୍କର ରାଜ୍ୟାଭିଷେକର ବ୍ୟାଘାତ ହୋଇଛି ଲୋକେ ଦେଖନ୍ତୁ ମୋର ପୌରୁଷଦ୍ୱାରା ଆଜ

ସେହି ଦୈନ ଶାନ୍ତି ତ ହେବ କି ନ ହେବ । ଅଜ ମୁଁ ପୌରୁଷଦ୍ୱାରା ନର-
କଙ୍କ ଶୃଙ୍ଖଳାବଦ୍ଧକାରାଗାର ମଦୋନ୍ମତ୍ତ ହସ୍ତୀ ପ୍ରାୟ ଧାବିତ ଦୈବକୁ ନିବ-
ର୍ତ୍ତିତ କରିବି । ପିତାଙ୍କ କଥା ଦୂର ସମସ୍ତ ଲୋକପାଳ ଅଥବା ତ୍ରିଲୋକ-
ବାସିପ୍ରାଣିମାନେ ସୁଦ୍ଧା ଆପଣଙ୍କ ଅଭିଷେକରେ ବ୍ୟାଘାତ କରି ପାରିବେ
ନାହିଁ । ଯେଉଁମାନେ ପରାମର୍ଶ କରି ଆପଣଙ୍କର ଚଉଦବର୍ଷ ବନବାସ
ସ୍ଥିର କରିଛନ୍ତି ସେହିମାନଙ୍କୁ ଚଉଦବର୍ଷ ବନବାସ କରିବାକୁ ହେବ ।
ଯେ ଆପଣଙ୍କର ଅଭିଷେକର ବ୍ୟାଘାତ କରି ପୁତ୍ରର ରାଜ୍ୟ ନିମିତ୍ତ ଯତ୍ନ
କରୁଛି ମୁଁ ତାହାର ଆଉ ପିତାର ଆଶା ବିଫଳ କରିବି । ମୁଁ ଯାହାର
ବିରୋଧୀ ମୋର ଉଗ୍ରପୌରୁଷରୁ ତାହାର ଯେତେବେଳେ ଦୁଃଖ ହେବ
ଦୈବବଳ ତାକୁ ସୁଖ ଦେଇ ପାରିବ ନାହିଁ । ସହସ୍ର ବର୍ଷ ଗଲେ ଯେତେ-
ବେଳେ ଆପଣଙ୍କର ପୁତ୍ରମାନେ ପ୍ରଜାପାଳନ କରିବେ, ଆପଣ ସେତେ-
ବେଳେ ବନବାସ କରିବେ—ପୂର୍ବ ରାଜର୍ଷିମାନଙ୍କ ଆଚରଣାନୁସାରେ ପୁତ୍ରଙ୍କୁ
ପୁତ୍ରବତ୍ ପ୍ରଜାପାଳନ କରିବାର ଭାରାର୍ପଣ କରି ବନବାସ କରିବା ବିନା
ବିଧେୟ । ଅନ୍ୟର ସେତେବେଳେ ରାଜ୍ୟରେ ଅଧିକାର ଜନ୍ମିବ । ପିତା ଅବ୍ୟ-
ବସ୍ଥିତଚିତ୍ତ ହେଲେହେଁ ଯେବେ ଆପଣଙ୍କର ସ୍ତ୍ରୀବଶ୍ୟତାଶଙ୍କାରେ ରାଜତ୍ୱ
କରିବାର ଅଭିଳାଷ ନ ଥାଏ ତେବେ ଆପଣ ଏ ଆଶଙ୍କା ପରିତ୍ୟାଗ
କରନ୍ତୁ—ମୁଁ ପ୍ରତିଜ୍ଞା କରି କହୁଛି ବେଳାଭୂମି ସମୁଦ୍ରକୁ ରକ୍ଷା କଲା
ପ୍ରାୟ ମୁଁ ଆପଣଙ୍କୁ ରକ୍ଷା କରିବି, ନ କଲେ ବୀରଲୋକରେ ମୋର ନାମ
ରହିବ ନାହିଁ । ଆପଣ ମାଙ୍ଗଲ୍ୟଦ୍ରବ୍ୟଦ୍ୱାରା ଅଭିଷିକ୍ତ ହୋଇ ରାଜତ୍ୱ
କରିବାକୁ ଉଦ୍ୟତ ହେଉନ୍ତୁ—ମୁଁ ଏକାକୀ ବଳଦ୍ୱାରା ମହୀପତିମାନଙ୍କୁ
ନିବାରଣ କରିବି । ମୋର ବାହୁଦ୍ୱୟ ଶୋଭାପାଇଁ ହୋଇ ନାହିଁ, ମୋର
ଧନୁ ଅଳଙ୍କାର ପାଇଁ ହୋଇ ନାହିଁ, ମୋର ତରବାରି କଟିବନ୍ଧନ ପାଇଁ
ହୋଇ ନାହିଁ, ମୋର ବାଣ ସ୍ତମ୍ଭନ ନିମିତ୍ତ ହୋଇ ନାହିଁ—ଶତ୍ରୁ ନାଶ-
ପାଇଁ ମୋର ସେହି ଚାରିଗୋଟି ଅସ୍ତ୍ର ଅଛି । ଯେ ଶତ୍ରୁ ମୋପରି ଯୋଦ୍ଧା
ବୋଲି ଗର୍ବିତ ଥାଉ ମୁଁ ଗଣେ ନାହିଁ—ବିଦ୍ୟୁତ୍ପ୍ରଦୀପ୍ତ ତୀକ୍ଷ୍ଣଧାର
ଅସି ଧାରଣକରି ବଜ୍ରଧରଙ୍କୁ ମୁଁ ଗ୍ରାହ୍ୟ ନ କରେଁ । ଆଜି ମୋର ଖଡ୍ଗାଘା-
ତରେ ଛିନ୍ନ ହସ୍ତୀ, ଅଶ୍ୱ, ରଥ, ଏବଂ ମନୁଷ୍ୟମାନଙ୍କର ହାତ, ଜଙ୍ଘ ଓ
ମୁଣ୍ଡ ସମାବୃତ ହୋଇ ମହୀମଣ୍ଡଳ ଦୁର୍ଗମ ହେବ । ଆଜି ମୋର ଖଡ୍ଗଧାର-
ରେ ହତ ଦୀପ୍ୟମାନ ଅଗ୍ନିପ୍ରାୟ ଶତ୍ରୁମାନେ ବିଦ୍ୟୁତ୍ସମନ୍ୱିତ ମେଘ ପ୍ରାୟ
ଭୂମିରେ ପତିତ ହେବେ । ଗୋଧା ଓ ଅଙ୍ଗୁଳିତ୍ରାଣ ବାନ୍ଧି ଶରାସନ

ଏକାନ୍ତ ଇଚ୍ଛା ହେଉଛି, ଯା—ତୋର ମଙ୍ଗଳ ହଉ । ତୁ ଫେରି ଆସିଲେ ମୋର ସବୁ କ୍ଳେଶ ଦୂର ହେବ । ତୁ ଚଉଦବର୍ଷ ବନବାସଦ୍ୱାରା ତାପାକୁ ଅରଣୀ କରି ଫେରି ଆସିଲେ ତୋତେ ଦେଖି ମୋର ପରମ ସୁଖ ହେବ । ରାମ ରେ ! କାଳର ଗତି ଅଗୋଚର—ସେହି କାଳ ମୋର ବାକ୍ୟ ଲଙ୍ଘି ବନକୁ ଯିବା ପାଇଁ ତୋତେ ବାଟ କଢ଼ାଉଛି । ଯା ବେଟେ—ଭଲରେ ଭଲରେ ଫେରି ଆସି ନିର୍ମଳଚିତ୍ତ ଓ ମଧୁରକଥାଦ୍ୱାରା ମୋତେ ଆନନ୍ଦିତ କରିବୁ । ମୋର ଚିରକାଳ କଷ୍ଟରେ ଗଲାଣି—ଏହା ବି ସହିବି ! —ଭଗବାନଙ୍କୁ ଜଣାଉଛି ତୁ ଜଟା ବଲ୍କଳ ପିନ୍ଧି ବନବାସରୁ ଫେରି ଆସି ଯେ କାଳରେ ମୋତେ ଆନନ୍ଦିତ କରିବୁ ସେ କାଳ ଏହିକ୍ଷଣି ହୋଇ ଯାଉ !—( ଜଳରେ ଆଚମନ କରି ) ରାମ ! ମୁଁ ତୋତେ ଫେରାଇ ପାରିଲି ନାହିଁ ! ତୁ ବନକୁ ଯାଇ ସାଧୁମାନଙ୍କର ଆଚରଣ କର—ଶୀଘ୍ର ଫେରିଆ । ଧୈର୍ଯ୍ୟସହକାରେ ଯଥାନିୟମରେ ଯେ ଧର୍ମ ପାଳନ କରୁଛୁ ସେହି ଧର୍ମ ତୋତେ ବନରେ ରକ୍ଷା କରନ୍ତୁ । ତୁ ଚୈତ୍ୟ ଗଛ ଏବଂ ଦେବାଳୟମାନଙ୍କରେ ଯେଉଁ ଦେବତାଙ୍କୁ ପ୍ରଣାମ କରୁ ସେମାନେ ତୋତେ ରକ୍ଷା କରନ୍ତୁ । ମହର୍ଷି ବିଶ୍ୱାମିତ୍ର ତୋତେ ଯେ ଅସ୍ତ୍ର ସବୁ ଦେଇଛନ୍ତି ସେହି ଅସ୍ତ୍ର ସବୁ ତୋତେ ରକ୍ଷା କରନ୍ତୁ । ତୁ ଜନକ ଜନନୀଙ୍କର ଶୁଶ୍ରୂଷା ଓ ସତ୍ୟ ବ୍ୟବହାରଦ୍ୱାରା ରକ୍ଷିତ ହୋଇ ଚିରକାଳ ବଞ୍ଚିଥା । ସମିତ୍ କୁଶ, ପବିତ୍ରବେଦୀ, ଦେବାଳୟ, ବ୍ରାହ୍ମଣମାନଙ୍କର ସ୍ଥଣ୍ଡିଳ, ବାସବାସ, ଶୈଳ, ବୃକ୍ଷ, ହ୍ରଦ, ପତଙ୍ଗ, ପନ୍ନଗ ଓ ସିଂହ ତୋତେ ରକ୍ଷା କରନ୍ତୁ । ମହେନ୍ଦ୍ର ପ୍ରଭୃତି ଲୋକପାଳ, ବିଶ୍ୱଦେବ ସାଧ୍ୟମାନେ, ଧାତା, ବିଧାତା, ମରୁତ, ମହର୍ଷି, ପୂଷା, ଭଗ, ଅର୍ଯ୍ୟମା, ଷଡ଼୍ଋତୁ, ବାରମାସ, ସମ୍ବତ୍ସର, ଦିନ, ରାତ୍ରି, ମୁହୂର୍ତ୍ତ, ନକ୍ଷତ୍ରଗଣ, ଅଧିଷ୍ଠାତ୍ରୀଦେବତା ସହିତ ଗ୍ରହମାନେ ସର୍ବଦା ତୋର ମଙ୍ଗଳ କରନ୍ତୁ । ଶ୍ରୁତି, ସ୍ମୃତି, ଧର୍ମ, ଭଗବାନ୍, ସ୍କନ୍ଦଦେବ ଇନ୍ଦ୍ର, ଚନ୍ଦ୍ର, ବୃହସ୍ପତି, ନାରଦ, ସପ୍ତ ଋଷି, ଦିକ୍ପାଳମାନଙ୍କ ସହିତ, ଦିକ୍ ଓ ସିଦ୍ଧମାନେ ତୋତେ ସର୍ବତୋଭାବରେ ରକ୍ଷା କରନ୍ତୁ । ମୁଁ ଚଳ ଓ ଅଚଳ ବାୟୁ, କୁବେର, ବରୁଣ, ପୃଥିବୀ, ଅନ୍ତରୀକ୍ଷ, ସ୍ୱର୍ଗ, ସମୁଦ୍ର ଓ ପର୍ବତ ସମସ୍ତଙ୍କୁ ସ୍ତବ କରୁଛି ଏମାନେ ତୋତେ ବନରେ ରକ୍ଷା କରନ୍ତୁ । ଦିବା, ରଜନୀ ଓ ସନ୍ଧ୍ୟା ତୋତେ ରକ୍ଷା କରନ୍ତୁ । କଳା ଓ କାଷ୍ଠା ତୋର କଲ୍ୟାଣ ବିଧାନ କରନ୍ତୁ । ତୁ ମୁନିବେଶଧାରୀ ହୋଇ ମହାବନଗାମୀ ହେଲେ ଦେବ ଦାନବମାନେ ତୋର ନିୟତ ସୁଖପ୍ରଦ ହୁଅନ୍ତୁ । କ୍ରୂର-

ନର୍ମ ପିଶାଚ, କ୍ରବ୍ୟାଦ, ଦୈତ୍ୟ ଓ ରାକ୍ଷସମାନଙ୍କଠାରୁ ତୋର ଭୟ ନ ହେଉ । ପ୍ଲବଙ୍ଗ, ବୃଶ୍ଚ, ମଶା, ଡାଆଁଶ, ପୋକ ଓ ସାପମାନେ ଗହନ-ବନରେ ତୋତେ କ୍ଳେଶ ନ ଦେଉନ୍ତୁ । ହସ୍ତି, ବାଘ, ଭାଲୁ, ବାଇଁ, ଦାନ୍ତ-ମହିଷ ଓ ଶୃଙ୍ଗିମାନେ ତୋର ଦ୍ରୋହ ନ କରନ୍ତୁ । ମୁଁ ନରମାଂସଭୋଜୀ ଭୟଙ୍କର କ୍ରୂରସ୍ୱଭାବ ଜନ୍ତୁମାନଙ୍କୁ ପୂଜା କରୁଛି ସେମାନେ ତୋର ହିଂସା ନ କରନ୍ତୁ । ବାଟରେ ତୋର ମଙ୍ଗଳ ହେଉ, ତୋର ପରାକ୍ରମ ସଫଳ ହେଉ, ଫଳ-ମୂଳାଦି ବନ୍ୟ ସମ୍ପତ୍ତି ତୋତେ ସୁଲଭ ହେଉ ! ବତ୍ସ ! ତୁ କଲ୍ୟାଣରେ ଯାତ୍ରା କର । ସ୍ୱର୍ଗ ମର୍ତ୍ତ୍ୟର ପ୍ରାଣୀ, ଦେବତା ଆଉ ଶତ୍ରୁବର୍ଗରୁ ତୋର ମଙ୍ଗଳ ହେଉ । ଶୁକ୍ର, ସୂର୍ଯ୍ୟ, ଚନ୍ଦ୍ର, କୁବେର ଓ ଯମ ଏମାନଙ୍କୁ ମୁଁ ପୂଜା କରୁଛି—ଏମାନେ ତୋର ଦଣ୍ଡକାରଣ୍ୟବାସ-କାଳରେ ରକ୍ଷକ ହେବେ । ଅଗ୍ନି, ବାୟୁ, ଧୂମ ଆଉ ମହର୍ଷିମାନଙ୍କର ମୁଖନିଃସୃତ ମନ୍ତ୍ରସବୁ ସ୍ନାନକାଳରେ ତୋତେ ରକ୍ଷା କରନ୍ତୁ । ରାମ ରେ ! ଆଉ କ କହିବି—ସର୍ବଲୋକପ୍ରଭୁ ସର୍ବଲୋକସ୍ରଷ୍ଟା ବ୍ରହ୍ମା ଆଉ ଅପରାପର ଦେବତା ଓ ଋଷିମାନେ ବନବାସକାଳରେ ତୋର ରକ୍ଷକ ହେଉନ୍ତୁ ! —ଲକ୍ଷ୍ମଣ ରେ—ବାପଟି—ଟିକିଏ ପୁରୋହିତଙ୍କୁ ଡାକ ଦେ ଯେ ବ୍ରାହ୍ମଣ-ମାନଙ୍କୁ ନେଇ ଆସିବେ—ମୁଁ ରାମକୁ ଯାତ୍ରା କରେଇ ଦେବି !

[ ଲକ୍ଷ୍ମଣଙ୍କ ପ୍ରସ୍ଥାନ ଏବଂ ପରକ୍ଷଣରେ ପୁରୋହିତ ଓ ପାଞ୍ଚଜଣ ବ୍ରାହ୍ମଣ ଓ ପୂଜାଦ୍ରବ୍ୟାଦି ସହିତ ପ୍ରବେଶ ।

( କୌଶଲ୍ୟାଙ୍କର ମାଳାଦ୍ୱାରା ଦେବତାମାନଙ୍କର ପୂଜା ଓ ସ୍ତବ, ପୁରୋହିତଙ୍କର୍ତ୍ତୃକ ହୋମ ଓ ମଧୁ ଦଧି ଘୃତମିଶ୍ରିତ ଅକ୍ଷତ ବ୍ରାହ୍ମଣମାନଙ୍କୁ ପ୍ରଦତ୍ତହେବା ପରେ ସେମାନଙ୍କଦ୍ୱାରା ସ୍ୱସ୍ତିବାଚନ ଓ ରାମଚନ୍ଦ୍ରଙ୍କର ବନବାସମଙ୍ଗଳ ନିମିତ୍ତ ମାଙ୍ଗଲ୍ୟ ସ୍ତବପାଠ ଏବଂ କୌଶଲ୍ୟାଙ୍କର ପୁରୋହିତ ଓ ବ୍ରାହ୍ମଣମାନଙ୍କୁ ଦକ୍ଷିଣା ପ୍ରଦାନ ।)

କୌଶ ।—ରାମ ! ବୃତ୍ରାସୁର-ନାଶକାଳରେ ସର୍ବଦେବନମସ୍କୃତ ମହେନ୍ଦ୍ରଙ୍କର ଯେ ମଙ୍ଗଳ ହୋଇଥିଲା ତୋର ସେହି ମଙ୍ଗଳ ହେଉ । ଅମୃତାହରଣକା-ଳରେ ପୂର୍ବେ ବିନତାଦେବୀ ଗରୁଡ଼ପାଇଁ ଯେ ମଙ୍ଗଳ ଆଶଂସା କରିଥିଲେ ତୋର ସେହି ମଙ୍ଗଳ ହେଉ । ଅମୃତ-ମନ୍ଥନକାଳରେ ଅଦିତିଦେବୀ ଦୈତ୍ୟହନନକାରୀ ବଜ୍ରଧାରୀ ମହେନ୍ଦ୍ରଙ୍କର ଯେ ମଙ୍ଗଳବିଧାନ କରିଥିଲେ ତୋର ସେହି ମଙ୍ଗଳ ହେଉ । ତ୍ରିପଦଦ୍ୱାରା ତ୍ରିଭୁବନଆକ୍ରମଣକାରୀ ଅନୁପମତେଜସ୍ୱୀ ବାମନାବତାର ବିଷ୍ଣୁଙ୍କର ଯେ ମଙ୍ଗଳ ହୋଇଥିଲା ତୋର

ସେହି ମଙ୍ଗଳ ହେଉ । ବେଦ, ଋଷି, ସାଗର, ନଦୀ, ଲୋକ ଓ ଦ୍ୱୀପସବୁ ତୋର ମଙ୍ଗଳବିଧାନ କରନ୍ତୁ ! ( ରାମଚନ୍ଦ୍ରଙ୍କ ମସ୍ତକରେ ବିଶଲ୍ୟକରଣୀ ଔଷଧି ଓ ଅକ୍ଷତ ରଖି ତାଙ୍କୁ ଗନ୍ଧଦ୍ରବ୍ୟ ଅନୁଲିପ୍ତ କରି ମସ୍ତକ ନୁଆଇଁ ଆଣି ଆଘ୍ରାଣ ଓ ଆଲିଙ୍ଗନ କରି ।) ରାମ—ଏବେ ତୁ ଯଥାସୁଖରେ ଗମନ କର । ତୋର ମନୋରଥ ସଫଳ ହେଉ । କେବେ ତୁ ଶୀଘ୍ରବେଗୀ ହୋଇ କାର୍ଯ୍ୟ ସମାଧାନ କରି ଫେରି ଆସି ଅଯୋଧ୍ୟାର ରାଜମାର୍ଗରେ ପହ-ଞ୍ଚିବୁ ମୁଁ ଦେଖିବି ! କେବେ ତୁ ବନରୁ ଫେରି ଆସିଲେ ତୋର ଚନ୍ଦ୍ରମୁଖ ଦେଖି ମୋର ସବୁ ଦୁଃଖ ପାସୋରି ଯିବ, ମୋର ମୁହଁରୁ ହସ ବାହା-ରିବ ! ଯା, ଶୀଘ୍ର ଫେରି ଆସି ସିଂହାସନରେ ବସି ସମସ୍ତଙ୍କର ଅଭିଳାଷ ପୂରଣ କର ! ମୁଁ ମହାଦେବ ପ୍ରଭୃତି ଦେବତା, ମହର୍ଷି, ନଦୀ, ଭୂତ ଓ ଦେବନାରୀମାନଙ୍କୁ ପୂଜା କରି ବିଶଲ୍ୟକରଣୀ ଔଷଧି, ଅକ୍ଷତ ଓ ଗନ୍ଧ ତୋତେ ଦାନ ଦେଉଛି—ତୋର ଦୀର୍ଘକାଳ ବନବାସସମୟରେ ସେ-ମାନେ ତୋର ହିତବାଞ୍ଛା କରନ୍ତୁ !

[ କୌଶଲ୍ୟାଙ୍କର ଚରଣ ବନ୍ଦନା କରି ରାମଚନ୍ଦ୍ରଙ୍କ ପ୍ରସ୍ଥାନ ।

ପଟ କ୍ଷେପଣ ।

---

ଦ୍ୱିତୀୟ ଦୃଶ୍ୟ—ସୀତାଦେବୀର ଗୃହ ।

[ ପର୍ଯ୍ୟଙ୍କୋପରି ସୀତା ଓ ଉର୍ମିଳା ଆସୀନା । ପୃଥଗାସନରେ ପ୍ରମଦା ଓ ସୁନନ୍ଦା ଉପବିଷ୍ଟା । ]

ଉର୍ମି ।—ରାମଦେବ ! ତୁମେ ସିଂହାସନ ନିକଟରେ ଚାମର ଧରି ଠିଆ ହେବ ନା ?

ପ୍ରମ ।—ମୋ ମନର କଥା କହିଦେଲ ଏକା । ମୁଁ ସେଇଥି ମନେ ମନେ କରି ଗୋଟିଏ ଶ୍ୱେତଚାମର ଠିକ କରି ରଖିଛି ମାତ୍ର ଶୁଣୁଛି ଯେ ସେଠିକି କେହି ମାଇକିନିଆ ଯିବେ ନାହିଁ ।—ଚାମର ଢୋଳିବା ନାହିଁ—ମୁଁ ଆଗ କରି ଏଣୁ ହୁଳହୁଳି ଦେବି ।

ସୁନ ।—ମୁଁ ଶଙ୍ଖ ବଜାଇବି ।

ପ୍ରମ ।—ରାଣୀ ସନ୍ତରଶିଙ୍କି ପଟେ କେମନ୍ତ ସୁନ୍ଦର ମାନିବ । ଅମେମାନେ ଅନେକ ଥର ସଜେଇ ଦେଖିଛୁଁ ମାତ୍ର ଆଜିପରି ପଦ୍ମିନୀଙ୍କର ଅଙ୍ଗଶୋଭା କେବେ ହୋଇ ନ ଥିଲା ।

ଊର୍ମ୍ମି ।—ସତ କହୁଚ ଗୋ ! ସେ କାଲି ଉପବାସ କରିଥିଲେ, ସନ୍ଧ୍ୟାରେ ଶୋଇ-
ଅନ୍ତି ନ ନାହିଁ, ପୁଣି ରାତି ପାହାରେ ଥାଉଁ ଉଠି ପୂଜାପୂଜ କରୁଅନ୍ତି—
ତେବେଁ ତାଙ୍କର ମୁଖଚନ୍ଦ୍ର ମଳିନ ନ ହୋଇ ଅଧିକ ଉଜ୍ଜ୍ୱଳ ଦିଶୁଚି—
ନାହିଁ ସୁନୟନେ ?

ସୁନ ।—ସଖି ତୁମେ ଠିକ୍ କହୁଚ—
ସଖି ଜନକୀର ସ୍ୱର୍ଣ୍ଣରୂପପ୍ରତିମା ଅତୁଲ୍ୟ ରୂପର ଅଟେ ଆଳୟ ।
ଫୁଟିଅଛି ଏକ ଅପୂର୍ବ ପ୍ରସୂନ ପଦ୍ମର କରି ବାୟୁ ମାଳୟ ॥
ସର୍ବଅଙ୍ଗେ ଶୋଭା ପାଏ ପୁଷ୍ପରାଜି ତହିଁ ପରେ ମୁଖଚନ୍ଦ୍ର ବସନେ ।
ନନ୍ଦନକାନନ କିବା ଉପଗତ ନିଷ୍କଳଙ୍କ ଶଶୀ ତା ପାଶେ ରହେ ।
ସୁବର୍ଣ୍ଣଭୂଷଣ ଦେବକନ୍ୟାଗଣ ଆନନ୍ଦଭିଯବେ ଉଜ୍ଜ୍ୱଳ ହୋଇ ।
ପୁଷ୍ପଛଳେ କିବା ସୁଖେ ଶଶିମୁଖ ପୁଷ୍ପମାଳ ଚଉପାଶରେ ଥୋଇ ।
କିବା ସେ କ୍ଷୀରୋଦସାଗରଜଳତ୍ତରେ ପଦ୍ମବନେ ପଦ୍ମ ଅପୂର୍ବ ଫୁଟି ।
ଅପୂର୍ବ କୌଶଳ କରଚ ବିଧାତା କହିବାକୁ ଅବା ଅପୂର୍ବ ସୃଷ୍ଟି ।
ମହିଯିବେ ଯହିଁ ଅଯୋଧ୍ୟାବାସିଏ ମହିଯିବେ ସାରସଂସାର ଲୋକେ ॥
ମହିଯିବେ ଦେବ-ଗନ୍ଧର୍ବ-କାମିନୀ ଆପଣାକୁ ମନେ ନ ଥିବ ଶୋକେ ।
କେତେ ଚରନୟନଯେଲେ ଅଛ ସାର୍ଥକ ହେଲୁଁ ଏ ନୟନଯୋଡ଼ ।
ଛାର ଶଚୀ ରତି ରମ୍ଭା ତିଲୋତ୍ତମା ତ୍ରୈଲୋକ୍ୟରେ ନାହିଁ ପାଇବେ ଯୋଡ଼ ।
ଦେଖିବେ ରେ ଲୋକେ ଶ୍ରୀରାମଘରଣୀ ସ୍ୱୟଂ ରାଜରାଣୀ ଅଯୋଧ୍ୟାରାଣୀ ।
ଭୁଲିଯିବେ ଘରଘରଣୀ ସମସ୍ତ " ଜୟ ସୀତାଦେବୀ" ଉଠିବ ବାଣୀ ।

( ଗୀତ । )

ରାଗିଣୀ ଶଙ୍କରାଭରଣ । ତାଳ-ଝଲା ।

ବରବରନା—ତୋ ଠାଣି ଜଗତଜଣା ରେ ।
ତୋ ଶୋଭାକୁ ନାହିଁ ଉପମା ରେ । ପଦ ।
ଏ ଯେଉଁ ଅପୂର୍ବ ବେଶ ରେ ସଜନି
ଶେଷଦେବ କହିନାରି ପାରିବେ ନ ଶେଷ ରେ । ୧ ।
ଲକ୍ଷ୍ମୀଅବତାର ତୁହି ରେ ସଜନି
ତୋ ରୂପ ଠାଣିକି ସରି ହେବ ନ ରେ କେହି ରେ । ୨ ।
ରମଣୀମାନେ ଯେତେ ବସ୍ତୁ ରେ ସଜନି
ଏହି ଲୋକ୍ୟଶୋଭାନିଧାନ ନିର୍ମିଥିବେ ଶୋଭ ରେ । ୩ ।

ଉର୍ମି ।—ସୁନୟନେ ! ତୁମେ ତ ବିଧାତାଙ୍କର ଏକ ଅପୂର୍ବସୃଷ୍ଟି । ଆହା !
ତୁମର ସ୍ୱର—ତୁମର ସୁନେତ୍ର—ତୁମର ଶାନ୍ତ ଲୋଚନକୁ ଏକାବେଳକେ
ଭୁଲେଇ ହବ ।

ପ୍ରମ ।—ଦେଖିଲ ଆମର କବି ନ ଥିଲେ ଏତେ ପରକାରେ ଯେ ସର୍ଗଙ୍କ
ସଜେଇଥିଲୁଁ ତାର ବର୍ଣ୍ଣନା କିଏ କରନ୍ତା ?

ସୀତା ।—ସତେ ଏକା କବି ସିନା । ତୁମେମାନେ ସଜେଇଛ ବେଶପରିପାଟୀ
କରି—ମାତ୍ର ସେ ଯାହା ହେଉ ସଖୀ ଯେ ବର୍ଣ୍ଣନାଷ୍ଟାକଲେ ତାଙ୍କ ଦୈନ୍ୟ-
କିଏର ଜନସ ନେମରେ ଅଣ୍ଟିଲା ନାହିଁ ।

ପ୍ରମ ।—ସଖି କହୁଛ ସିନା—ତୁମକୁ ଏକା ବଡ଼ ସୁନ୍ଦର ଦିଶୁଛ—ମୁଁ ତୁମକୁ
ଏଭଳି ରୂପବତୀ କେବେ ଦେଖି ନାହିଁ ।—ସଖି ବେଳଗ ହେଲଣି
ଆସି ଆଉ ଉତ୍ତର ନାହିଁ କି ହଉଛ ?

ସୀତା ।—କେ ଜାଣି ସଖି ( ବ୍ୟସ୍ତଭାବେ ଉଠି ) ସଖି ଆର୍ଯ୍ୟପୁତ୍ର ଆସୁଛନ୍ତି ପରା ।

[ ଉର୍ମିଳା, ପ୍ରମଦା, ଓ ସୁନୟନାଙ୍କ ପ୍ରସ୍ଥାନ ଓ ରାମଚନ୍ଦ୍ରଙ୍କ ପ୍ରବେଶ ।

ରାମ ।—( ସଲଜ୍ଜ ଓ ଚିନ୍ତାକୁଳ ଭାବରେ ଦଣ୍ଡାୟମାନ । )

[ ଲକ୍ଷ୍ମଣଙ୍କ ପ୍ରବେଶ ଓ ଦୂରେ ଅଲକ୍ଷିତଭାବେ କୋଣରେ ଦଣ୍ଡାୟମାନ ।

ସୀତା ।—( ସାଶ୍ଚର୍ଯ୍ୟ ) ଆର୍ଯ୍ୟପୁତ୍ର ! ଏ ଆନନ୍ଦସମୟରେ ତୁମର ଏରୂପ
ଦୁଃଖଭାବ କାହିଁକି ଦେଖୁଛି ! ଆଜ ବୃହସ୍ପତିବାର ପୁଷ୍ୟାନକ୍ଷତ୍ର—ପଣ୍ଡିତ
ବ୍ରାହ୍ମଣମାନେ ଆଜ ତୁମର ଅଭିଷେକର ଦିନ ଧରିଛନ୍ତି, ତୁମେ ମନ ଖରାପ
କରିଛ କାହିଁକି ? ତୁମ ଉପରେ ଛତି ଉଡୁ ନାହିଁ କାହିଁକି ? ତୁମର
ପାଖରେ ଆଲଟ ପଡୁ ନାହିଁ କାହିଁକି ? ଭାଟମାନେ କାହିଁକି ତୁମର
ମଙ୍ଗଳସ୍ତୁତି କରୁ ନାହାନ୍ତି ? ବେଦପାରଗ ବ୍ରାହ୍ମଣମାନେ କାହିଁକି ତୁମର
ମସ୍ତକରେ ମନ୍ତ୍ର ଦିଅ ଦେଉ ନାହାନ୍ତି ? ବଡ଼ ବଡ଼ ସାମନ୍ତ, ପୌର,
ଜାନପଦ ଓ ଅମାତ୍ୟମାନେ କାହିଁକି ତୁମ ପଛରେ ଯାଉ ନାହାନ୍ତି ?
ସ୍ୱର୍ଣ୍ଣାଲଙ୍କାରମଣ୍ଡିତ ବେଗବାନ୍ ଚତୁରଶ୍ୱଯୋଜିତ ପୁଷ୍ପରଥ କାହିଁକି
ତୁମ ଆଗେ ଆଗେ ଯାଉ ନାହିଁ ? ଶୁଭଲକ୍ଷଣଲକ୍ଷିତ ଶ୍ରୀମନ୍ତ କୃଷ୍ଣମେଘ
ଓ ଦନ୍ତପ୍ରାପ୍ତ ପ୍ରଭାଶାଳୀ ହାତୀ ତୁମ ଆଗରେ କାହିଁକି ଯାଉ ନାହିଁ ? କାଞ୍ଚନ-
ଚର୍ଚ୍ଚିତ ପ୍ରିୟଦର୍ଶନ ଭଦ୍ରାସନ ନେଇ କେହି ଭୃତ୍ୟ ତୁମ ପଛରେ କାହିଁକି
ଯାଉ ନାହିଁ ?—ଆର୍ଯ୍ୟପୁତ୍ର ! ତୁମର ଅଭିଷେକର ଆୟୋଜନ ହେଉଛି—
ତୁମର ଆନନ୍ଦର ସମୟ ଉପସ୍ଥିତ ମାତ୍ର ତୁମର ମୁଖକାନ୍ତି ଏତେ ମଳିନ
ହୋଇ ଯାଇଛି କାହିଁକି ? ଏପରି ଆଗେ କେବେ ଦେଖା ଯାଇ ନାହିଁ ।

ରାମ ।—ପ୍ରିୟେ ! ପୂଜ୍ୟପାଦ ପିତା ମୋତେ ବନକୁ ପଠାଉଛନ୍ତି । ମୋର ଅବସ୍ଥା ଏପରି କାହିଁକି ହୋଇଛି ଶୁଣ :—ପିତା ମଝିଆଁ ମାଙ୍କୁ ଯୋଉଁ ଦୁଏ ବର ଦେବାକୁ ଅଙ୍ଗୀକାର କରିଥିଲେ, ବର୍ତ୍ତମାନ ମଝିଆଁ ମା ସେହି ଦୁଇବର ମାଗି ପିତାଙ୍କୁ ଅସ୍ଥିର କରିଛନ୍ତି । ବାପା ଭରତଙ୍କୁ ଯୌବରାଜ୍ୟ ଦେଉଛନ୍ତି—ମୋତେ ଚତୁର୍ଦ୍ଦଶବର୍ଷପାଇଁ ଦଣ୍ଡକବନରେ ରହିବାକୁ ହେବ । ମୁଁ ବନକୁ ଯିବାପାଇଁ ଉଦ୍‌ଯୋଗୀ ହୋଇ ତୁମକୁ ଦେଖିବାକୁ ଆସିଛି । ତୁମ୍ଭେ ଥାଅ ।—ଭରତ ନିକଟରେ ମୋର ପ୍ରଶଂସା କରିବ ନାହିଁ । ସମୃଦ୍ଧିଶାଳିପୁରୁଷମାନେ ପରପ୍ରଶଂସା ସହ୍ୟ କରି ନ ପାରନ୍ତି । ତୁମ୍ଭଙ୍କ ପାଇଁ ଭରତର ଅବଶ୍ୟ କର୍ତ୍ତବ୍ୟକାର୍ଯ୍ୟ ନୁହେଁ, ଏଣୁ ତୁମକୁ ତାଙ୍କର ଅନୁକୂଳ ବ୍ୟବହାର କରି ରହିବାକୁ ହେବ । ଯେତେବେଳେ ବାପା ତାଙ୍କୁ ସନାତନ ଯୌବରାଜ୍ୟ ଦେଇଛନ୍ତି ସେତେବେଳେ ସେ ରାଜା ।—ତୁମ୍ଭର ତାଙ୍କୁ ସନ୍ତୁଷ୍ଟ କରିବା ଉଚିତ । ମୁଁ ପରମଗୁରୁ ପିତାଙ୍କର ପ୍ରତିଜ୍ଞା ପାଳିବାପାଇଁ ଆଜ ବନକୁ ଯିବି-ତୁମ୍ଭେ ସେଥିପାଇଁ ବ୍ୟାକୁଳ ହେବ ନାହିଁ । ମୁଁ ମୁନିଗଣସେବିତ ବନକୁ ଗଲେ ତୁମେ ବ୍ରତ, ଉପବାସ ଓ କୌଳିକ କାର୍ଯ୍ୟ ସବୁ କରି ସମୟ କଟାଇବ । ପ୍ରତିଦିନ ସକାଳୁଁ ଉଠି ଦେବପୂଜା କରି ପିତାଙ୍କୁ ବନ୍ଦିବ । ମୋର ଶୋକରେ କାତର ବୃଦ୍ଧଜନନୀଙ୍କର ସମ୍ମାନ କରିବା ଉଚିତ, ତେଣୁ ତାଙ୍କୁ ପ୍ରତ୍ୟହ ବନ୍ଦିବ । ଅପରାପର ଯେଉଁ ମା ଅଛନ୍ତି ସେମାନେ ତୁମ୍ଭର ବନ୍ଦନୀୟା, ସେମାନେ ସମସ୍ତେ ତୁମ୍ଭଙ୍କୁ ସ୍ନେହ, ପ୍ରୀତି ଓ ପରିପାଳନ କରନ୍ତି । ଭରତ ଆଉ ଶତ୍ରୁଘ୍ନ ମୋର ପ୍ରାଣଠାରୁ ପ୍ରିୟତମ—ତୁମ୍ଭେ ସେମାନଙ୍କଠାରେ ଭ୍ରାତ ବା ପୁତ୍ରସମାନ ବ୍ୟବହାର କରିବ । ବର୍ତ୍ତମାନ ଭରତ ଏହି ଦେଶ ଓ ଅସ୍ମମାନଙ୍କବଂଶର ପ୍ରଭୁ ହୋଇଛନ୍ତି—ତାଙ୍କର ଅପ୍ରିୟ ଆଚରଣ କରିବା ତୁମ୍ଭର ଉଚିତ ନୁହେଁ । ରାଜାମାନେ ସେବା ଓ ସଚ୍ଚରିତ୍ରଦ୍ୱାରା ଆରାଧିତ ହେଲେ ପ୍ରସନ୍ନ ହୁଅନ୍ତି, ତାହାର ଅନ୍ୟଥା ହେଲେ ଚଟିଯାନ୍ତି । ରାଜାମାନେ ଅହିତକାରି ଔରସ ପୁତ୍ରମାନଙ୍କୁ ପରିତ୍ୟାଗ କରିପାରନ୍ତି ଏବଂ ହିତକାରୀ ସମ୍ପର୍କବିହୀନ ଲୋକଙ୍କୁ ମଧ୍ୟ ଗ୍ରହଣ କରନ୍ତି । ପ୍ରିୟେ ! ତୁମେ ଧର୍ମ ଓ ସତ୍ୟବ୍ରତନିରତା ଆଉ ଭରତର ଅନୁବର୍ତ୍ତିନୀ ହୋଇ ଏଠାରେ ଥାଅ । ମୁଁ ଏହିକ୍ଷଣି ବନକୁ ଚାଲିଲି—ତାହାର ଅନିଷ୍ଟଜନକ କୌଣସି କାର୍ଯ୍ୟ ଯେପରି ନ କର ମୋର ଏତିକି ମାଗୁଣି ।

ସୀତା ।—( ପ୍ରଣୟଜନିତ-କୋପସମନ୍ବିତା ) ଆର୍ଯ୍ୟପୁତ୍ର ! ଏଡ଼େ ହାଲୁକା କାହିଁ ହେଲ—ତୁମର କଥା ଶୁଣି ମୋତେ ହସ ମାଡ଼ୁଛି । ତୁମ କଥା

ଅସ୍ତ୍ର-ଶସ୍ତ୍ରଜ୍ଞ ବୀର ରାଜପୁତ୍ରମାନଙ୍କ ପକ୍ଷେ ନିତାନ୍ତ ଅଯଶସ୍କର ଆଉ ଅନୁଚିତ—ତାହା ଶୁଣିବାର ଯୋଗ୍ୟ ନୁହେ । ବାପ, ମା, ଭାଇ, ପୁଅ, ଭଉଣୀ ଏମାନେ ଆପଣା ଆପଣା କପାଳ,ଯେକ ସୁଖଦୁଃଖ ଭୁଞ୍ଜନ୍ତି ମାତ୍ର ନାରୀମାନେ ଏକା ସ୍ୱାମିର କପାଳ ଯୋଗ ସୁଖ-ଦୁଃଖ-ଭାଗିନୀ । ତୁମକୁ ଯେବେ ବନବାସର ଆଦେଶ ହୋଇଛି ମୋତେବି ହୋଇଛି । ନାରୀର କି ଇହକାଳ କି ପରକାଳ ସବୁକାଳରେ ସ୍ୱାମୀ ଏକା ଗତି—ବାପ, ମା, ପୁଅ, ଆତ୍ମା କି ସଖୀଜନ କେହି ସ୍ତ୍ରୀମାନଙ୍କର ଗତି ନୁହେ । ଯେବେ ତୁମେ ଏହିକ୍ଷଣି ଦୁର୍ଗମ ବନକୁ ଯିବ ତେବେ ମୁଁ ବି କୁଶକଣ୍ଟକସବୁ ମାଡ଼ି ତୁମ ଆଗେ ଆଗେ ଯିବି । ଆର୍ଯ୍ୟପୁତ୍ର ! ମୋଠାରେ କିଛି ପାପ ନାହିଁ;—ଯେପରି ଦୁର୍ଗମ ବନରେ ଯାଉଥିବା ଲୋକ ପିଇଲା ପାଣିରୁ କିଛି ସଙ୍ଗେ ଘେନି ଚଳେ ତୁମେ ଈର୍ଷା ଆଉ ରୋଷ ଛାଡ଼ି ମୋତେ ସେହିପରି ସଙ୍ଗେ ନିଅ । ସ୍ୱାମିର ଅବସ୍ଥା ଭଲ ହେଉ ଅବା ମନ୍ଦ ହେଉ ସ୍ତ୍ରୀମାନଙ୍କପ୍ରତି ସ୍ୱାମିର ପାଦଚ୍ଛାୟା ପାର୍ଥିବ ବା ସ୍ୱର୍ଗୀୟ ସୁଖଜନକ ବସ୍ତୁ ଅଥବା ଅଣିମାଦି ଅଷ୍ଟବିଧ ସିଦ୍ଧିଠାରୁ ସମଧିକ ସୁଖକର । ସ୍ୱାମୀପ୍ରତି ମୋହର ଯେରୂପ ବ୍ୟବହାର କରିବା ଉଚିତ ତାହା ମା ବାପ ମୋତେ ଯଥାଶାସ୍ତ୍ର ଶିଖାଇଛନ୍ତି; ତୁମେ ମୋତେ କିଛି କହ ନାହିଁ—ମୁଁ ନିଶ୍ଚୟ ନିର୍ଜନ ବ୍ୟାଘ୍ର-ମୃଗପୂର୍ଣ୍ଣ ଦୁର୍ଗମ ବନକୁ ଯିବି—ମୁଁ ତ୍ରୈଲୋକ୍ୟୈଶ୍ୱର୍ଯ୍ୟଚିନ୍ତା ଛାଡ଼ି ଦେଇ ପାତିବ୍ରତ୍ୟ ବ୍ରତଚର୍ଯ୍ୟାରେ ରତ ଥାଇ ଘରେ ଯେପରି ସୁଖରେ ଥିଲି ସେହିପରି ବନରେବି ସୁଖରେ ରହିବି—ମୁଁ ତପସ୍ୟାନିରତା ହୋଇ ତୁମର ଶୁଶ୍ରୂଷା କରି ତୁମସଙ୍ଗରେ ମଧୁଗନ୍ଧସୁବାସିତ ବନମାନଙ୍କରେ ବିହାର କରିବି । ତୁମେ ବନରେ ଥାଇ ସମସ୍ତ ଜୀବ ପାଳି ପାର—ମୋତେ ପାଳିବା କିବା କଥା ! ଆଜ ମୁଁ ନିଶ୍ଚେ ତୁମସଙ୍ଗରେ ବନକୁ ଯିବି—ବନକୁ ଯିବାପାଇଁ ମୋର ନିତାନ୍ତ ଉତ୍ସାହ ହୋଇଛି, ତୁମେ ମୋତେ ତହିଁରୁ କ୍ଷାନ୍ତ କରି ପାରିବ ନାହିଁ । ମୁଁ ଫଳମୂଳ ଖାଇ ତୁମସଙ୍ଗେ ବନରେ ରହିବି—ମୋର ଖାଇବାପାଇଁ ତୁମକୁ କିଛି କ୍ଲେଶ ପଡ଼ିବ ନାହିଁ । ମୁଁ ତୁମ ଆଗେ ଆଗେ ଯିବି । ତୁମେ ଖାଇଲା ଉତ୍ତାରୁ ଖାଇବି । ମୁଁ ତୁମ ନିକଟରେ ଥାଇ ନିର୍ଭୟ ହୋଇ ପର୍ବତ, ନଦୀ, ସରୋବର, ପଲ୍ୱଲ ସବୁ ଦେଖିବାକୁ ବାଞ୍ଛା କରେଁ—ତୁମସଙ୍ଗରେ ଥାଇ ହଂସ-କାରଣ୍ଡବ-ସମାକୀର୍ଣ୍ଣ ପଦ୍ମପୁଷ୍ପଶୋଭିତ ସରୋବର ଦେଖିବାକୁ ମୋର ମନ ଅଛି—ତୁମସଙ୍ଗରେ ଥାଇ ତାହା ସବୁ ଦେଖି ତହିଁରେ ସ୍ନାନ କରିବାକୁ ମୋର ମନ ଅଛି । ଆର୍ଯ୍ୟପୁତ୍ର ! ଏରୂପରେ

ତୁମସଙ୍ଗରେ ଶହ ଶହ ସହସ୍ର ବର୍ଷ ବନବାସ କଲେବି ମୋର କିଛିମାତ୍ର କ୍ଳେଶ ହବ ନାହିଁ ମାତ୍ର ତୁମକୁ ଛାଡ଼ି ମୋର ସ୍ୱର୍ଗରେ ରହିବାକୁ ବାଞ୍ଛା ନାହିଁ—ତୁମକୁ ଛାଡ଼ି ମୋତେ ସ୍ୱର୍ଗରେ ନେଇ କେହି ବସାଇ ଦେଲେବି ତା ମୋତେ ଭଲ ଲାଗିବ ନାହିଁ । ମୁଁ ମାକଡ଼, ବାଘ ଓ ହରିଣପୂର୍ଣ୍ଣ ଦୁର୍ଗମ ବନକୁ ଯିବି—ସେଠାରେ ତୁମର ଚରଣ ସେବା କରି ଆନନ୍ଦରେ ବାପ-ଘରେ ଥିଲାପରି ରହିବି । ମୋର ମନ ତୁମଠାରେ ନିତାନ୍ତ ଆସକ୍ତ, କେବେ ମୋ ମନରେ ଅପର କୌଣସି ଭାବ ସ୍ଥାନ ପାଏ ନାହିଁ । ତୁମେ ମୋତେ ଛାଡ଼ିଗଲେ ନିଶ୍ଚୟ ମୋର ପ୍ରାଣ ବାହାରି ଯିବ । ମୋ କଥା ରଖ, ମୋତେ ସଙ୍ଗରେ ନେଇ ଚାଲ—ମୋତେ ସଙ୍ଗରେ ନେଇଯିବାକୁ ତୁମର କିଛି କ୍ଳେଶ ହେବ ନାହିଁ ।

ରାମ ।—ପ୍ରିୟେ ! ତୁମ୍ଭେ ଉଚ୍ଚକୁଳରେ ଜନ୍ମ ହୋଇ ସର୍ବଦା ଧର୍ମାନୁଷ୍ଠାନରେ ରତ ଅଛ । ମୁଁ ଯାହା ତୁମ୍ଭଙ୍କୁ କହିବି ତୁମ୍ଭର ତାହା କରିବା ଉଚିତ । ତୁମ୍ଭେ ଏହିଠାରେ ଥାଇ ଧର୍ମାଚରଣ କର—ତାହାହେଲେ ମୋ ମନରେ ସୁଖ ହେବ । ବନରେ ନାନାପ୍ରକାର ଦୋଷ ଅଛି—ପଣ୍ଡିତମାନେ ବନକୁ ନାନାପ୍ରକାର ଦୋଷର ଖଣି ବୋଲି କହନ୍ତି । ତୁମ୍ଭେ ବନବାସବୁଦ୍ଧି ଛାଡ଼ । ବନ ଚିରକାଳ ଦୁଃଖ ଦିଏ । ବନରେ କୌଣସି କାଳରେ ସୁଖ ହୁଏ ନାହିଁ । ମୁଁ ତୁମ୍ଭର ଭଲ ଖାଇ କହୁଛି—ତୁମ୍ଭେ ବନବାସବୁଦ୍ଧି ଛାଡ଼ । ପ୍ରିୟେ ! ବନରେ ଗିରିକନ୍ଦରବାସି ସିଂହମାନଙ୍କର ଗର୍ଜନ ଯେତେବେଳେ ଗିରିନିର୍ଝରଶବ୍ଦରେ ମିଳିତ ହୋଇ ଶୁଣାଯାଏ ସେତେବେଳେ ଭୟରେ ଲୋକର ପ୍ରାଣ ଉଡ଼ିଯାଏ ।—ବନ ଅତି ଦୁଃଖଦାୟକ ।

ସୀତା ।—( ମୃଦୁସ୍ୱରରେ ମସ୍ତକାବନତ କରି ) ତା ହେଉ ।

ରାମ ।—ନିର୍ଜନବନରେ କ୍ରୀଡ଼ାପରାୟଣ ମୃଗମାନେ ଖେଳରେ ମାତି ନଦନ ହୋଇ ମନୁଷ୍ୟମାନଙ୍କୁ ଦେଖିଲାକ୍ଷଣି ବଧିବାକୁ ଦଉଡ଼ି ଆସନ୍ତି ।

ସୀତା ।—ତା ହେଉ ।

ରାମ ।—ଯେଉଁ ନଦୀମାନ ଅତ୍ୟନ୍ତ ପଙ୍କୁଆ, କୁମ୍ଭୀରପରିପୂର୍ଣ୍ଣ ଆଉ ଯହିଁରେ ପଶି ଅରପାଟିକ ମଲୁଆଳା ହାତୀମାନେବି ଯାଇ ନ ପାରନ୍ତି ବନରେ ଏପରି ବହୁତ ଅଛି ।

ସୀତା—ତା ହେଉ ।

ରାମ ।—ବନବାସ ଉପାଶ୍ରୟରେ ସୁଖ ହୁଏ ନାହିଁ—ବଣଲୁହୁଟର ଶରୀର ସର୍ବଦା କ୍ଷୁଧାତୁର ହୁଏ, ପାଣି ମିଳେ ନାହିଁ—ଅତି କଷ୍ଟ ।

ରାମ ।—( ଲୁହ ପୋଛି ଦେଇ ) ପ୍ରିୟେ ! ତୁମ୍ଭେ ଜାଣିବା ଶୁଣିବାରେ ହୋଇ ବାଳକାଙ୍କ ପ୍ରାୟ ଏପରି ଜାହିଁ କ ଜାଣୁଛ । ଚଉଦବର୍ଷର ବନବାସ—ଗ୍ରୀଷ୍ମ ଗ୍ରୀଷ୍ମ ଦିନ ନେଇଟା ଗଲଗଲେ ମୁଁ ପୁଣି ଆସି ତୁମ ନିକଟରେ ପହଞ୍ଚିବି । ଦଣ୍ଡକାରଣ୍ୟ ଅତି ଭୟାନକ ସ୍ଥାନ ସେଠି ପଦ ପଡ଼ିଲେ ଲୁଣ୍ଠି ହେଉଛି, ନାଠ ପଡ଼ିଲେ ଢେଙ୍କି ହେଉଛି—କେତେ ଅସୁର, କେତେ ହିଂସ୍ର-ଜୀବ ବୁଲୁଛନ୍ତି—ତୁମ୍ଭପରି ନବଯୌବନୀ ରମଣୀ ନେଇ ଯିବା ମୋର ଜଦାକାଳେ ଉଚିତ ନୁହେ । ତୁମ୍ଭେ ସ୍ଥିର ହୁଅ—ଶାନ୍ତ ହୁଅ କପାଳରେ ଥିଲେ ସବୁ ଦୁଃଖ ସହିବାକୁ ହୁଏ—କେତେ ହେଲେ ଦୁଃଖ ସହି ଯାଉଛି ଚଉଦବର୍ଷ ସ୍ୱାମିବିରହ କିବା କଥା ।

ସୀତା ।—( ଅଧିକ କାନ୍ଦି କାନ୍ଦି ) ଆର୍ଯ୍ୟପୁତ୍ର ! ମୁଁ ଜାହିଁକ ଜନ୍ମିତ—ପୁରୁଷ ହୋଇ ଏପରି ସ୍ତ୍ରୀଲୋକପରି କଥା କହୁଛ—ସୂର୍ଯ୍ୟର ପ୍ରତାପର ତୁମର ପ୍ରତି—ତୁମେ ମୋତେ ସଙ୍ଗରେ ନ ନେଲେ ଯେବେ ଲୋକେ ତୁମକୁ ଭୀରୁ କହିବେ ତା ଙ୍କ ଭଲ ହେବ । ( ରାମଚନ୍ଦ୍ରଙ୍କ ବେକକୁ ଦୃଢ଼ କରି ଧରି ବକ୍ଷସ୍ଥଳରେ ମୁହଁ ପୋତି ) ତୁମେ କାହାକୁ ଡରୁଛ—କି ସ୍ତ୍ରୀବ ବଶବ୍ଦ ହୋଇଛ ଯେ ଯାହା ଆଉ କେହି ନାହିଁ ସେପରି ଲଳନାକୁ ପରି-ତ୍ୟାଗ କରିବାର ବାଞ୍ଛା କରିଛ ? ତୁମେ ଜାଣିଥାଅ ସାଧ୍ୱୀ ଯେପରି ସ୍ୱଭାବାନର ବଶବର୍ତ୍ତିନୀ ମୁଁ ସେହିପରି ତୁମର ବଶବର୍ତ୍ତିନୀ—ମୁଁ କୁଳ-କାମିନୀ କାମିନୀଙ୍କ ପରି ମନରେ ପରପୁରୁଷକୁ ଭାବେ ନାହିଁ—ମୁଁ ତୁମକୁ ଛାଡ଼ି ଏଠି ରହି ପାରିବି ନାହିଁ—ମୁଁ ନିଶ୍ଚେ ତୁମସଙ୍ଗରେ ଯିବି—ତୁମେ କୁମାରୀ ଅବସ୍ଥାରୁ ମୋତେ ବିଭାହୋଇ ଏତେକାଳ ସହବାସ କଲ ପରେ ଶୈଳୁଷ ପ୍ରାୟ ସତୀପତ୍ନୀକୁ ଅପରକୁ ଦେବାପାଇଁ ବସିଛ କି ? ଯେ ଭରତ-ପାଇଁ ତୁମର ଅଭିଷେକ ବନ୍ଦ ହେଲା—ଯାର ହିତ ସାଧନ କରିବାପାଇଁ ମୋତେ ଉପଦେଶ ଦେଉଛ ତୁମେ ତାର ବଶବର୍ତ୍ତୀ ହୋଇ ପ୍ରିୟକାର୍ଯ୍ୟ ସମାଧାନ କର । ନାଥ !—ମୋତେ ଛାଡ଼ି ତୁମର ବନକୁ ଯିବାର ନୁହେ—ମୋର ତପସ୍ୟା ହେଉ, ସ୍ୱର୍ଗ ବା ଅରଣ୍ୟବାସ ହେଉ ସବୁ ତୁମସଙ୍ଗରେ । କୋମଳଶଯ୍ୟାରେ ଶୋଇବାକୁ ମୋର ଯେପରି ପରିଶ୍ରମ ହୁଏ ନାହିଁ ତୁମ-ସଙ୍ଗରେ ଅରଣ୍ୟବାଟେ ଯିବାକୁ ମୋର ସେହିପରି କିଛି କଷ୍ଟ ହେବ ନାହିଁ—ତୁମସଙ୍ଗରେ ଥିଲେ କୁଶ, କାଶ, ଶର, ଇଷିକା ଓ କଣ୍ଟାଗଛ-ମାନ ମୋ ପକ୍ଷରେ ତୁଳା ଓ ମୃଗଚର୍ମ ପ୍ରାୟ କୋମଳ ହେବ ! ବିଶେଷ ପବନ ହୋଇ ମୋ ଦେହରେ ଧୂଳି ବୋଳି ହୋଇଗଲେ ମୁଁ ଚନ୍ଦନ

ବୋଲି ହେଲାପରି ମଣିବ ! ନାଥ ! ତୁମ ନିକଟରେ ଥାଇଁ ଆସରେ ଶୋଇଲାଠାରୁ କି ତୁମ ବିରହରେ ପର୍ଯ୍ୟଙ୍କରେ ଶୋଇବା ସୁଖକର ହେବ ? ଅନ୍ନ ହେଉ ବସ୍ତ୍ର ହେଉ ତୁମେ ନିଜେ ଫୁଲ ମୂଳ ପତ୍ର ଗୋଟିଏ ମୋତେ ଦେଲେ ସେ ମୋର ଅମୃତ ପରି ହବ ? ମୁଁ ବନରେ ଥାଇ ସ୍ୱରବର୍ଷାରେ ଫଳମୂଳ ଉପଭୋଗ କଲେ ମା ବାପ କି ଅଯୋଧ୍ୟାନଗରୀ କିଛି ମନେ କରିବ ନାହିଁ ! ମୁଁ ବନରେ ଖାଇବା ପିଇବା କି କୌଣସି କଥାପାଇଁ ତୁମର ଅପ୍ରିୟକାର୍ଯ୍ୟ କରିବି ନାହିଁ—ମୋପାଇଁ ତୁମର ଶୋକ ହେବ ନାହିଁ—ମୋର ଭରଣପୋଷଣପାଇଁ ତୁମର କ୍ଲେଶ ହେବ ନାହିଁ ।—ନାଥ !—ତୁମ ନିକଟରେ ଥିଲେ ସେ ମୋର ସ୍ୱର୍ଗବାସ—ତୁମକୁ ଛାଡ଼ିଲେ ସେ ମୋର ନରକବାସ !—ମୋର ହୃଦୟ ଏପରି ଦୃଢ଼ ଜାଣି ତୁମେ ମୋତେ ବନକୁ ସଙ୍ଗେ ନେଇ ଚାଲ ! ନାଥ ମୋତେ ବନକୁ ଯିବାପାଇଁ ଶୋକବଶ୍ୟ ମନ ହେଉଛି ତୁମେ ଯେବେ ମୋତେ ସଙ୍ଗରେ ନ ନେବ ମୁଁ ଶତ୍ରୁମାନଙ୍କ ବଶୀଭୂତା ନ ହେବାପାଇଁ ବିଷ ପାନ କରିବି !—ତୁମେ ଛାଡ଼ିଯିବା ମାତ୍ରେ ମୋର ମରଣ ହେବା ଉତ୍ତମ—ତୁମେ ମୋତେ ଛାଡ଼ି ଗଲେ ଯେବେ ସେହିକ୍ଷଣି ମରଣ ନ ହୋଇ ତେବେବି ତୁମର ବିରହଦୁଃଖରେ ବହୁକାଳ ଜୀବନ ରହିବ ନାହିଁ !—( ଅତ୍ୟନ୍ତ କାନ୍ଦି ) ନାଥ ! ମୁଁ ତ ମୁହୂର୍ତ୍ତେମାତ୍ର ତୁମର ବିରହଦୁଃଖ ସହି ପାରିବି ନାହିଁ ତୁମେ ଚଉଦବର୍ଷର କଥା କ କହୁଛ ! !—( ଏହି ପାଦତଳେ ପଡ଼ି ଗୋଡ଼ ଧରି କାନ୍ଦିବାର । )

ରାମ ।—( ହାତରେ ସୀତାଙ୍କୁ ଉଠାଇ ଲୁହ ପୋଛି ଦେଇ ) ପ୍ରିୟେ ! ତୁ—କାନ୍ଦ ନାହିଁ—ତୁମ୍ଭର ଦୁଃଖ ହେଲେ ମୁଁ ସ୍ୱର୍ଗକୁ କାମନା ନ କରେଁ—ସ୍ୱୟମ୍ଭୁ ବ୍ରହ୍ମା ପ୍ରାୟ ମୋର କୌଣସି ଜନ୍ତୁଠାରୁ ଭୟ ନାହିଁ—ତୁମ୍ଭଙ୍କୁ ମୁଁ ଅରଣ୍ୟରେ ରକ୍ଷା କରି ପାରିବ । ମାତ୍ର ତୁମ୍ଭର ମନ ଉତ୍ତମରୂପେ ନ ଜାଣି ତୁମ୍ଭଙ୍କୁ ବନକୁ ନେବାପାଇଁ ମୋର ଇଚ୍ଛା ନ ଥିଲା—ଏବେ ଜାଣିଲି ବିଧାତା ତୁମ୍ଭଙ୍କୁ ମୋ ସଙ୍ଗରେ ବନବାସିନୀ ହେବାପାଇଁ ଜନକକୁଳରେ ସୃଷ୍ଟି କରିଥିଲେ—ଆତ୍ମବାନ୍ ବ୍ୟକ୍ତି ସ୍ୱାଭାବିକ ପ୍ରୀତିକି ତ୍ୟାଗ କରି ନ ପାରିଲା ପ୍ରାୟ ମୁଁ କି ତୁମ୍ଭଙ୍କୁ ଛାଡ଼ି ପାରିବ ନାହିଁ । ପୂର୍ବତନ ରାଜର୍ଷିମାନେ ଯେପରି ସପତ୍ନୀକ ହୋଇ ବାନପ୍ରସ୍ଥ କରିଥିଲେ ମୁଁ ବି ସେହିପରି ସପତ୍ନୀକ ହୋଇ ବାନପ୍ରସ୍ଥ କରିବ । ପ୍ରିୟେ ! ସୁବର୍ଚ୍ଚଳା ଦେବୀ ଅସ୍ମତ୍ ପୂର୍ବପୁରୁଷ ସୂର୍ଯ୍ୟଦେବଙ୍କ ଅନୁବର୍ତ୍ତିନୀ ହେଲାପ୍ରାୟ ତୁମେ ମୋର ଅନୁବର୍ତ୍ତିନୀ ହୁଅ ।

ମୁଁ ଯେ ବନକୁ ଯିବ ନାହିଁ ଏହା କେବେ ହେବ ନାହିଁ—ପିତାଙ୍କ ପ୍ରତିଜ୍ଞାର ବାକ୍ୟ ମୋତେ କଷ୍ଟ ସେଠିକି ଘେନିଯିବ । ପିତାମାତାଙ୍କର ବଶୀଭୂତ ହେବା ସନାତନଧର୍ମ—ସେମାନଙ୍କର ଆଜ୍ଞା ଲଙ୍ଘି ମୁଁ ବଞ୍ଚିବାକୁ ସୁଦ୍ଧା ନ ଚାହେଁ। ସହଜ ଉପାୟରେ ପ୍ରତ୍ୟକ୍ଷ ଦେବତା ପରମଗୁରୁ ପିତାମାତାଙ୍କୁ ଅତିକ୍ରମ କରି ଯମନିୟମାଦି·କଷ୍ଟକର ଉପାୟରେ ପରୋକ୍ଷ ଦେବତାର ଆରାଧନାରେ ପ୍ରବୃତ୍ତ ହେବା କି କଥା ? ପିତାମାତାଙ୍କୁ ଆରାଧନା କଲେ ଧର୍ମଅର୍ଥକାମ ତ୍ରିବର୍ଗ ଲାଭ ହୁଏ—ତାଙ୍କପରି ପଦାର୍ଥ ଆଉ କେହି ନାହିଁ—ଏଥିପାଇଁ ମୁଁ ତାଙ୍କୁ ଆରାଧନା କରେଁ। ପିତୃସେବା ଯେରୂପ ପରଲୋକସୁଖସାଧିକା ସେପରି ସ୍ୱର୍ଗ, ଧନ, ଧାନ୍ୟ, ବିଦ୍ୟା, ପୁତ୍ର, ସୁଖ କିଛି ନୁହେ। ଯେଉଁ ମହାତ୍ମାମାନେ ପିତାମାତାଙ୍କର ସେବା କରନ୍ତି ସେ-ମାନେ ଦେବଲୋକ, ଗନ୍ଧର୍ବଲୋକ, ଗୋଲୋକ ଓ ବ୍ରହ୍ମଲୋକ ପ୍ରାପ୍ତ ହୁଅନ୍ତି। ସତ୍ୟଧର୍ମନିରତ ପିତାଙ୍କର ଆଦେଶାନୁବର୍ତ୍ତୀ ହେବା ସନାତନଧର୍ମ—ଏପରି ପିତାମୋତେ ଯେପରି ଆଦେଶ କରିବେ ମୁଁ ସେହିପରି ଚଳି-ବାକୁ ଇଚ୍ଛା କରେଁ। ପ୍ରିୟେ! ତୁମ୍ଭର ଯେବେ ବନବାସ କରିବାକୁ ଷୋଳ-କଳା ମନ ହୋଇଛି ମୁଁ ତୁମ୍ଭଙ୍କୁ ଦଣ୍ଡକାରଣ୍ୟକୁ ଘେନିଯିବ—ମୁଁ ତୁମ୍ଭଙ୍କୁ ବନକୁ ଯିବା ପାଇଁ ଅନୁମତି ଦେଉଛି—ତୁମ୍ଭେ ମୋ ସଙ୍ଗରେ ଚାଲ—ମୋ ସଙ୍ଗରେ ବାନପ୍ରସ୍ଥ ଧର୍ମାଚରଣ କର । ତୁମ୍ଭେ ଆମର ଆଉ ତୁମ୍ଭର ବଂଶର ଉପଯୁକ୍ତ କାର୍ଯ୍ୟ କରିଛ—ତୁମ୍ଭର ଅଭିପ୍ରାୟ ଅତିଉତ୍ତମ। ଶୀଘ୍ର ବନବାସୋଦ୍ଦେଶ୍ୟରେ ସମସ୍ତ କାର୍ଯ୍ୟ ସମା-ଧାନ କର।—ତୁମ୍ଭଙ୍କୁ ଛାଡ଼ି ମୋର ସ୍ୱର୍ଗଗମନରେ ବି ବାଞ୍ଛା ନାହିଁ—ଯାଅ, ବ୍ରାହ୍ମଣ ଭିକ୍ଷୁକମାନଙ୍କୁ ଚାହିଁଲାମତେ ରହିଭୋଜନ ପ୍ରଦାନ କର! ଯାଅ—ବିଳମ୍ବ ନ କର—ବ୍ରାହ୍ମଣମାନଙ୍କୁ ଧନରତ୍ନ ପ୍ରଦାନ କରି ଆମ୍ଭମାନଙ୍କର ଯେ ସବୁ ବହୁମୂଲ୍ୟ ଅଳଙ୍କାର, ଖେଳନା, ଶଯ୍ୟା ଯାନ ପ୍ରଭୃତି ଦ୍ରବ୍ୟ ଅଛି ସମସ୍ତ ଭୃତ୍ୟମାନଙ୍କୁ ପ୍ରଦାନ କର।

ଲକ୍ଷ୍ମଣ।—( ଦଉଡ଼ି ଆସି ରାମଚନ୍ଦ୍ରଙ୍କର ଚରଣଦ୍ୱୟ ଧରି ପ୍ରଣତଭାବରେ କାନ୍ଦୁ-କାନ୍ଦୁ ) ଯେବେ ଆପଣମାନଙ୍କର ଏକାନ୍ତ ମୃଗଗଣସମାକୁଳ ବନକୁ ଯିବାର ବାଞ୍ଛା ହେଲା ତେବେ ମୁଁ ଧନୁ ଧରି ଆପଣମାନଙ୍କର ଆଗେ ଆଗେ ଯିବି। ଆପଣମାନେ ମୋ ସଙ୍ଗରେ ମୃଗ-ପକ୍ଷିଧ୍ୱନିପରିପୂର୍ଣ୍ଣ ରମଣୀୟ ଅରଣ୍ୟରେ ବିଚରଣ କରି ପାରିବେ—ମୁଁ ଆପଣମାନଙ୍କୁ ଛାଡ଼ି ସ୍ୱର୍ଗଗମନ କି ଅମରତ୍ୱ କି ଇନ୍ଦ୍ରାଦି ଲୋକର ଐଶ୍ୱର୍ଯ୍ୟ ଅଭିଳାଷ ନ କରେଁ।

ରାମ ।—ଭାଇ ଲକ୍ଷ୍ମଣ—ଏ କି କଥା—ତୁ କାହିଁକି ବନକୁ ଯିବୁ ? ତୁ ବନକୁ ଯା ନା ।—ଏପରି ବୁଦ୍ଧି ତୋର କାହିଁକି ହେଲା ? ସେ ବୁଦ୍ଧି ଛାଡ଼—ବନକୁ ଯା ନା ।

ଲକ୍ଷ୍ମ ।—(ପୂର୍ବବତ୍) ଭାଇ ! ଆପଣ ମୋତେ ସବୁବିଷୟରେ ଆପଣଙ୍କର ଅନୁଗାମୀ ହେବାପାଇଁ ଆଦେଶ କରିଅଛନ୍ତି—ଏତେବେଳେ ବନକୁ ଯିବାପାଇଁ ମନା କରୁଅଛନ୍ତି କାହିଁକି ?—ମୋତେ ବଡ଼ ସନ୍ଦେହ ଲାଗୁଛି ।

ରାମ ।—ଲକ୍ଷ୍ମଣ ! ତୁ କାର୍ଯ୍ୟସମ୍ପନ୍ନ, ସ୍ନିଗ୍ଧସ୍ୱଭାବ, ନମ୍ର ସତ୍ପଥାବଲମ୍ବୀ, ଧର୍ମନିରତ—ମୋର ପ୍ରାଣପ୍ରିୟ ବଶୀଭୂତ ଭାଇ ଓ ସଖା । ଭାଇ, ତୁ ମୋ ସଙ୍ଗରେ ବନକୁ ଗଲେ ମା ଆଉ ସାନ ମାଙ୍କୁ ପାଳିବ କିଏ ? ମେଘ ପୃଥିବୀକୁ ଜଳଦାନ କରେ; ଯେଉଁ ପିତା ପ୍ରଭୁର ପରିମାଣରେ ସେମାନଙ୍କୁ କାମ୍ୟବସ୍ତୁ ପ୍ରଦାନ କରନ୍ତି ସେହି ମହିଷୀ ମାର ଅନୁରାଗରେ ବନ୍ଧା ହୋଇଛନ୍ତି—ସେ ସେ ତାଙ୍କୁ ପାଳିବେ ଏପରି ଭରସା ହେଉ ନାହିଁ । ନୂତନାନୁରାଗିଣୀ ମହିଷୀ ମା ରାଜ୍ୟ ପାଇଲା ଉତ୍ତାରୁ ଦୁଃଖିନୀ ସପତ୍ନୀଙ୍କ ପ୍ରତି ଉତ୍ତମ ବ୍ୟବହାର କରିବେ ନାହିଁ—ଭରତ ରାଜ୍ୟଲାଭ କରି ମାତାର ମତାନୁବର୍ତ୍ତୀ ହୋଇ ମା ଓ ସାନ ମାଙ୍କୁ ସ୍ମରଣ କରି ନ ପାରେ । ଏଣୁ ତୁ ଘରେ ଏଠି ଥାଇ ସେମାନଙ୍କ ପ୍ରତି ରାଜାନୁଗ୍ରହ ସମ୍ପାଦନ କରି ତାଙ୍କୁ ପ୍ରତିପାଳନ କର । ତୁ ଧର୍ମଜ୍ଞ—ମୁଁ ଯାହା କହୁଛି ତାହା କର—ଏହା କଲେ ତୋର ଯେ ମୋ ପ୍ରତି ଦୃଢ଼ଭକ୍ତି ଅଛି ତାହା ବି ଦେଖାଯିବ ଆଉ ଗୁରୁଜନଙ୍କର ପୂଜା କରିବା ହେତୁ ଉତ୍କୃଷ୍ଟ ଧର୍ମଲାଭ ହେବ । ଭାଇ ଲକ୍ଷ୍ମଣ ! ମୋ ପାଇଁ ହେଲେ ଏତିକି କର—ତୁ ମୁଁ ଦୁହିଜଣଙ୍କ ବିରହରେ ଯେପରି ଆମ୍ଭମାନଙ୍କର ମାଙ୍କୁ କଷ୍ଟ ପାଇବାକୁ ନ ହୁଏ ?

ଲକ୍ଷ୍ମ ।—ଭାଇ ! ଏକଥା କାହିଁକି କହୁଛନ୍ତି ?—ଆପଣଙ୍କ ପରାକ୍ରମପ୍ରଭାବରେ ମହିଷୀ ଭରତ ଯତ୍ନପୂର୍ବକ ମା ଓ ବଡ଼ମାଙ୍କୁ ପୂଜା କରିବେ ଏଥିରେ ସନ୍ଦେହ ନାହିଁ । ସେ ଯେବେ ଉତ୍କୃଷ୍ଟ ରାଜ୍ୟଲାଭ କରି ମଦମତ୍ତ, ଗର୍ବିତ, କ୍ରୂରତାସମ୍ପନ୍ନ ଓ କୁପଥଗାମୀ ହୋଇ ତାଙ୍କୁ ରକ୍ଷା ନ କରିବେ ତେବେ ମୁଁ ତାଙ୍କୁ ଆଉ ତାଙ୍କ ପକ୍ଷର ସମସ୍ତ ଲୋକମାନଙ୍କୁ ଗୋଟି ଗୋଟି କରି ହାଣି ପକାଇବି—ତ୍ରୈଲୋକ୍ୟବାସୀ ସମସ୍ତେ ଯେବେ ତାଙ୍କ ଆଡ଼କୁ ହେବେ ତେବେହେଁ କାହାର ମୋ ହାତରୁ ପରିତ୍ରାଣ ନାହିଁ ।—ଭାଇ ! ବଡ଼ମାଙ୍କୁ କାହାରି ପ୍ରତିପୋଷଣ କରିବାକୁ ହେବ ନାହିଁ—ସେ ଆମପରି ହଜାରଲୋକଙ୍କୁ ପାଳି ପାରନ୍ତି । ବଡ଼ମା ଆଶ୍ରିତବ୍ୟକ୍ତିମାନଙ୍କୁ ପାଳିବାପାଇଁ ହଜାର—

ଶକ୍ତି ଗାଁ ପାଇଛନ୍ତି, ସେ ଅନାୟାସରେ ଆପଣାଙ୍କୁ, ମୋ ମାଉ ଆଉ ମୋ ଭଉ ହଜାରେ ଲୋକର ଭରଣପୋଷଣ ଚଳାଇ ପାରିବେ—ଆପଣ ସେଥିପାଇଁ ଚିନ୍ତା କରିବେ, ନାହିଁ । ଆପଣ ମୋତେ ସହଚର କରନ୍ତୁ—ତହିଁରେ ଆପଣଙ୍କର କିଛି ଧର୍ମହାନି ହେବ ନାହିଁ—ବରଂ ମୋଦ୍ୱାରା ଆପଣଙ୍କର ଫଳମୂଳ ଆହରଣ ପ୍ରଭୃତି କେତେକ କାର୍ଯ୍ୟ ହେବ, ମୁଁ ବି କୃତାର୍ଥ ହେବି ! ମୁଁ ଧନୁରେ ଗୁଣ ଚଢ଼ାଇ ଖଣ୍ଡା ଧରି ଆପଣଙ୍କ ଆଗେ ଆଗେ ବାଟ ଦେଖାଇ ଚାଲିବି ଏବଂ ପ୍ରତିଦିନ ଆପଣଙ୍କପାଇଁ ଫଳ, ମୂଳ ଓ ହୋମଦ୍ରବ୍ୟ ସଂଗ୍ରହ କରିବି—ଅଧିକନ୍ତୁ ଆପଣ କେବଳ ପର୍ବତଶୃଙ୍ଗରେ ସୀତାଦେବୀଙ୍କ ସଙ୍ଗରେ ବିହାର କରି ବୁଲିବେ—ମୁଁ ଶୋଇବା ଉଠିବା ସବୁ ସମୟରେ ଆପଣଙ୍କର ସମସ୍ତ ଆବଶ୍ୟକୀୟ କାର୍ଯ୍ୟ ସମ୍ପାଦନ କରିବି ।

ରାମ ।—( ଲକ୍ଷ୍ମଣର ହାତ ଧରି ଉଠାଇ ଦୃଢ଼ଭାବେ ଆଲିଙ୍ଗନ କରି ) ଭାଇ ! ତୋ କଥାରେ ମୋର ଅତ୍ୟନ୍ତ ସନ୍ତୋଷ ହେଲା । ବିଧାତା ତୁ, ମୁଁ ଆଉ ସୀତା ତିନିଜଣଙ୍କ କପାଳରେ ବନବାସ ଲେଖିଛନ୍ତି ! ଯା—ମାଉ ଆଉ ବନ୍ଧୁମାନଙ୍କର ଅନୁମତି ନେଇ ଶୀଘ୍ର ଆସି ମୋର ଅନୁଗାମୀ ହୋ । ମହାତ୍ମା ବରୁଣଦେବ ମହାଯଜ୍ଞରେ ସନ୍ତୁଷ୍ଟ ହୋଇ ମହୀପତି ଜନକଙ୍କୁ ଯେ ଦୁଇ ଅତି ଭୟାନକ ଦିବ୍ୟଧନୁ, ଦିବ୍ୟ ଅଭେଦ୍ୟ କବଚ, ଶାୟକପୂର୍ଣ୍ଣ ଅକ୍ଷୟ ତୂଣ ଓ ସୂର୍ଯ୍ୟପ୍ରଭାତୁଲ୍ୟ ପ୍ରଭାନ୍ୱିତ ହେମଖଚିତ-ଖଡ୍ଗ ପ୍ରଦାନ କରିଥିଲେ କି ଯାହା ସବୁ ଆମ୍ଭେମାନେ ବିବାହକାଳରେ ଯୌତୁକରେ ପାଇଥିଲୁ ମୁଁ ସେ ସମସ୍ତ ଅସ୍ତ୍ର ପୂଜା କରି ଆଚାର୍ଯ୍ୟଙ୍କ ଗୃହରେ ରଖିଛି । ତାହାସବୁ ନେଇ ଶୀଘ୍ର ଫେରି ଆ ।—ବିଳମ୍ବ କରିବୁ ନାହିଁ—ଆଜ ଜଟାଚୀର ଧାରଣ କରି ବନକୁ ଯିବାକୁ ହେବ !

[ ଲକ୍ଷ୍ମଣର ପ୍ରସ୍ଥାନୋଦ୍ୟତ ଓ

ଯବନିକା ପତନ ।

( ନେପଥ୍ୟେ—ଗୀତ । )

ରାଗିଣୀ ଖଟ—ତାଳ ଆଡ଼ଖେମଟା ।

ବିଧିର ବିଧାନ କେ କରିବ ଆନ ଆହା କିସ ହେଉଁ କି ହେଲା ସଂଘଟନ ।
କାହିଁ ସିଂହାସନ ମଣି-ଆଭରଣ କାହିଁ ଜଟାଚୀର ହୋଇଲା ବସନ । ଘୋଷା ।
କେତେ ଆଡ଼ମ୍ବର ହେବ ଅଭିଷେକ, କେତେ ରଙ୍ଗ ଲାଗିଥିଲା ରାଜ୍ୟଯାକ,
କେଉଁଣେ ସବୁ ଗଲା କିଛି ନ ରହିଲା ଜନନର ଗେଲ ସାରିଲା ଜୀବନ । ୧ ।

କେହୁ ସୁଚନ୍ଦ୍ରିତା ବାମେ ସେ ବସିବେ, କେହୁ ଛତ୍ର ଧରି ସାରଥି ହୋଇବେ,
ପଡ଼ିଲା କପାଳ ଛାଡ଼ିଲେ ସକଳ—ଯୋଗିବେଶେ ସାର ହେଲା ଯିବାବନ ।
ଅନିତ୍ୟ ସଂସାର ଅନିତ୍ୟ ଗଠିତ, ବୃଥା ମାୟାମୋହେ ଲୋକେ ବିମୋହିତ—
ମନୁଷ୍ୟକଳ୍ପନା ନୁହଇ ଠିକଣା, ଭୁଞ୍ଜିବେ ଯେ ଯାହା କପାଳଲିଖନ ॥
ନଶ୍ବର ସଂସାର କଷ୍ଟ ସହିବାର, ସହିଯିବ ହେଲେ କର ଧୈର୍ଯ୍ୟ ସାର,—
ଅହୋ ନିଦାରୁଣ ବିଧିର ବିଧାନ—କାହିଁ ସିଂହାସନ କାହିଁ ମହାବନ ॥

---

# ପଞ୍ଚମ ଅଭିନୟ ।

## ପ୍ରଥମଦୃଶ୍ୟ—କୌଶଲ୍ୟାଦେବୀଙ୍କ ଶୟନାଗାର ।

[ ପର୍ଯ୍ୟଙ୍କୋପରି ରାଜା ଦଶରଥ ବିକଳଭାବେ ଆସୀନ । ଦୁଇପାର୍ଶ୍ୱେ କୌଶଲ୍ୟା ଓ ସୁମିତ୍ରାଦେବୀ ବସି ଚରଣସେବା କରିବା । ]

ଦଶ ।—( ଦୀର୍ଘନିଶ୍ୱାସ ତ୍ୟାଗ କରି ବିକଳସ୍ୱରେ ) ହା ରାମ ! ତୋତେ ନିର୍ବାସିତ କରିବାପାଇଁକି ମୁଁ କାଳସର୍ପିଣୀ କେକୈୟୀର ହାତ ଧରିଥିଲି !—କ୍ରୂରେ ! ତୁ କି ସୂର୍ଯ୍ୟକୁଳରେ କଳଙ୍କ ଲଗାଇବାପାଇଁ ଜନ୍ମଗ୍ରହଣ କରିଥିଲୁ ? ଦଶରଥର କଥା କେବେ ମିଛ ହେବ ନାହିଁ । ତୋତେ ମୁଁ ଯାହା ପରିତ୍ୟାଗ କରିଛି ତାହା ସେଲ କଥା ନୁହେ । ତୁ ଧର୍ମ ଛାଡ଼ି ଅର୍ଥସାଧନରେ ତତ୍ପର ହେଲୁ ?—ତୁ ମୋର ଭାର୍ଯ୍ୟା ନୋହୁ କି ବାନରୀ ନୋହୁ । ତୋର ଗର୍ଭଜାତ ଭରତ ଯେବେ ଏହି ଅକ୍ଷୟ ରାଜ୍ୟଲାଭ କରି ସନ୍ତୁଷ୍ଟ ହୁଏ ତେବେ ମହୁଦେଶ୍ୟରେ ଚତୁର୍ଦ୍ଦଶ ଦ୍ରବ୍ୟଜାତ ମୋହର ଶ୍ରାଦ୍ଧରେ ଆସିବ ନାହିଁ !—ହାୟ ! ମୁଁ କି ମୂର୍ଖ ! ମୋପରି ବ୍ୟକ୍ତିକି ଯୁବା ବନ୍ଧୁ-ବିବାହ ଏତେ ଦୋଷ ଘଟାଇଲା—ମୁଁ ଆଗରୁ ଯାହା ବୁଝି ନ ପାରିଲି—କାଳସର୍ପିଣୀକି ବକ୍ଷସ୍ଥଳରେ ପୋଷିଥିଲି ! ଦେବି କୌଶଲ୍ୟେ ! ମୁଁ ତାହା ପ୍ରଣୟର ବଶବର୍ତ୍ତୀ ହୋଇ ତୁମ୍ଭଙ୍କୁ ବହୁତ କଷ୍ଟ ଦେଇଛି—ମୋତେ କ୍ଷମା କରିବ । ମୋତେ ତୁମ୍ଭ ମୁହଁ ଦିଶୁ ନାହିଁ—ମୋର ଦୃଷ୍ଟିଶକ୍ତି ନଷ୍ଟ ହୋଇ ଯାଉଛି—ମୋର କରସ୍ପର୍ଶ କର !! ଦେବି ସୁମିତ୍ରେ !—ତୁମ୍ଭେ କି ଯଥାର୍ଥ ଦେଖ—ଯେ ଲକ୍ଷ୍ମଣପ୍ରାୟ ପୁତ୍ରକୁ କୋଳରେ ଧରିଛ ତାର ଜୀବନ ସାର୍ଥକ—ମୁଁ ପ୍ରେମକୋଳରେ ମତ୍ତ ହୋଇ କିଛି ବୁଝି ପାରିଲି ନାହିଁ !!

କୌଶ ।—( ବିକଳସ୍ୱରେ ) ମହାରାଜ ! ଆପଣ ଏପରି ଅଧୀର ହେଲେ ଆମ୍ଭମାନଙ୍କର ଦଶା କି ହେବ ? ଆପଣ ଶାନ୍ତ ହେଉନ୍ତୁ ।

ସୁମି ।—( କାନ୍ଦିଲେ ) ବିଧିନିର୍ବନ୍ଧ କେହି ଆନ କରି ପାରିବ ନାହିଁ—ନୋହିଲେ ଯେଉଁ ରାମଚନ୍ଦ୍ର ଆଜି ପାହିଲେ ରାଜା ହେବେ ସେ କିଣ ନା ଜଟାଚୀର ଘେନି ଭାଇ ଭାର୍ଯ୍ୟା ସହିତ ବନକୁ ଗଲେ !

ଦଶ ।—ଆହା ରାମବିନା ଅଯୋଧ୍ୟାପୁରୀ ଅନ୍ଧକାର ହୋଇଛି—ରାମବିନା ଦଶରଥର ଚକ୍ଷୁ ଅନ୍ଧ ହୋଇଗଲା !—ଦେବ ! ରାମବିନା କି ଦଶରଥ ବଞ୍ଚିବ ଏ ଆଶା କରିଛ ?—ହା ରାମ—ହା ପ୍ରିୟପୁତ୍ର ରାମ—ହା ସୀତେ—ହା ସତୀ ସାଧ୍ୱୀ ସୀତେ—ହା ଭ୍ରାତୃବତ୍ସଳ ଲକ୍ଷ୍ମଣ—

[ ଦଶରଥ, କୌଶଲ୍ୟା ଓ ସୁମିତ୍ରାର କ୍ରନ୍ଦନ ଓ ସୁମନ୍ତ୍ରର ପ୍ରବେଶ ।

ସୁମନ୍ତ୍ର ।—( ସ୍ୱଗତ ) ରାଜପୁରୀ ଆଜ ଶ୍ମଶାନପୁରୀ ହୋଇଛି—ଏତ ସମସ୍ତେ କାନ୍ଦୁଛନ୍ତି ମୁଁ କାହାକୁ କ କହିବ ! ଅହୋ ଯେ ରାମଚନ୍ଦ୍ର ଅଯୋଧ୍ୟାର ଏକମାତ୍ର ଉଜ୍ଜ୍ୱଳମଣିସ୍ୱରୂପ ଥିଲେ ତାଙ୍କ ବିନା ଅଯୋଧ୍ୟାପୁରୀ ଅନ୍ଧକାର ନ ଦିଶିବ କି ? ଯାହାଙ୍କୁ ଘେନି ରାଜପୁରୀ—ଅଯୋଧ୍ୟାପୁରୀ ଶୋଭା ପାଉଥିଲା ତାଙ୍କବିନା ତା ଶ୍ମଶାନପରି ନ ଦିଶିବ କି ?—ଆହା ମହାରାଜଙ୍କର ଦଶା ବଡ଼ ଶୋଚନୀୟ ଦେଖା ଯାଉଛି !—ଯେ କୈକେୟୀର ପ୍ରେମପାଶରେ ଏତେଦିନ ଏକାନ୍ତ ବଦ୍ଧ ଥିଲେ ଏବେ ଜାଣି ପାରିଲେ ଯେ ସେ ନିତାନ୍ତ କୁଟିଳାନ୍ତଃକରଣା ଓ କାମଚାରିଣୀ ଆଉ ଯେଉଁ କୌଶଲ୍ୟା ଓ ସୁମିତ୍ରା ଦେବୀ ଏତେଦିନ ଚକ୍ଷୁର ଶୂଳ ହୋଇଥିଲେ ସେ ଏବେ ପରଚର୍ଯ୍ୟା କରି ଅନ୍ତକାଳକୁ କାର୍ଯ୍ୟରେ ଆସିଲେ !—କାଳସ୍ୟ କୁଟିଳାଗତିଃ !—ମହାରାଜ ନିତାନ୍ତ ଶୋକବିହ୍ୱଳ ଓ ଲକ୍ଷ୍ମୀହୀନପ୍ରାୟ ଦିଶୁଛନ୍ତି—ଗତିକ ଭଲ ନୁହେ !—( ପ୍ରକାଶ୍ୟେ ) ମହାରାଜ ! ସୁମନ୍ତ୍ର ଏହିଠାରେ ଅଭିବାଦନ କରୁଛି ( ସାଷ୍ଟାଙ୍ଗ ପ୍ରଣତ ଓ ଉଠି ଦଣ୍ଡାୟମାନ । )

କୌଶ ।—( ଅତି ବିକଳସ୍ୱରେ ) ସୁମନ୍ତ୍ର ! ତୁମେତ ଆସିଲ ମୋର ନୟନପିତୁଳା ରାମଚନ୍ଦ୍ର କାହିଁ !—ସୁମନ୍ତ୍ର ! ତୁମେ ମୋର ସର୍ବସ୍ୱଧନ ରାମଚନ୍ଦ୍ରଙ୍କୁ କାହିଁ ଛାଡ଼ି ଆସିଲ ?—ମୋର ପରମଲକ୍ଷ୍ମୀ ସୀତାଦେବୀଙ୍କି କେଉଁଠାରେ ବିଦାୟ କରି ଆସିଲ ?—ମୋର ଲକ୍ଷ୍ମଣ ପୁଅକୁ କେଉଁଠାରେ ରଖି ଆସିଲ ?

ସୁମନ୍ତ୍ର ।—ମାତଃ ! ଯେଉଁଦିନ ରାମଚନ୍ଦ୍ର ଗଙ୍ଗାନଦୀ ପାର ହେବାକୁ ବସିଲେ ମୁଁ ପଚାରିଲାରୁ ମୋତେ କହିଲେ "ତୁମ୍ଭେ ରଥ ଘେନି ବାହୁଡ଼ି ଯାଅ—ଆମ୍ଭେ-

ମାନେ ଏଣିକି ପାଦଶୁଶ୍ରୂଷା ହୋଇ ମହାରଣ୍ୟକୁ ଯିବୁ"—ଏ କଥା ଶୁଣି ମୋର ହୃଦୟ ଫାଟିଗଲା ! ଯେ ରାଜଭୋଗରେ କଷ୍ଟିନ୍ତ ଥାନ୍ତି ଦିନରାତି ଅତି ସୁଖରେ କଟାଉଥିଲେ ସେ ସମାନ୍ୟ ତପସ୍ୱୀ ପ୍ରାୟ ମହାରଣ୍ୟରେ ଭ୍ରମଣ କରିବେ ଏହା ଦେଖି କିଏ ଛାତି ଧରି ପାରେ !—ମୁଁ ଅନେକ କାନ୍ଦାକାଟି କହିଲି ଯେରୂପ ଲକ୍ଷ୍ମଣଙ୍କୁ ସେ ଆପଣା ଭାଇବୋଲି ସଙ୍ଗରେ ନେଇ ଯାଉଛନ୍ତି ମୋତେବି ସେହିପରି ସଙ୍ଗରେ ନେଇ ଗଲେ ମୁଁ ଅନେକ କାର୍ଯ୍ୟରେ ଆସିବି—ମାତ୍ର ଏତେ କାନ୍ଦାକଟାରେ ବି ମୁଁ ତାଙ୍କ ମନାଇଁ ପାରିଲି ନାହିଁ ! ସେ ପଛକୁ ନ ମାନି ମୋତେ ଏକାନ୍ତ ଫେରି ଆସିବାକୁ କହି କହିଲେ 'ତୁମ୍ଭେ ଫେରି ନ ଗଲେ ମହିଷୀ ମା ଆମ୍ଭେମାନେ ବନକୁ ଗଲୁଁ ବୋଲି କେବେ ବିଶ୍ୱାସ କରିବେ ନାହିଁ'—ତହୁଁ ଆଉ ଅନର୍ଥ ସମ୍ଭବ—ମୁଁ କି କରିବି, ଅଗତ୍ୟା ବାଧ୍ୟ ହୋଇ ଫେରି ଆସିଲି !

କୌଶ ।—(କାତର) ସୁମନ୍ତ୍ର ! ମୋର ଦରିଦ୍ରସଞ୍ଚିତ ଜୀବନଧନ ରାମଚନ୍ଦ୍ରଙ୍କୁ ମହାରଣ୍ୟକୁ ବିଦାୟ କରି ଦେଇ ଆସିଲ !! (ପଛକୁ ଢଳିପଡ଼ି ମୂର୍ଚ୍ଛାଗତା ।)

ସୁମନ୍ତ୍ର ।—(ଉଚ୍ଚସ୍ୱରରେ) ପାଣି—ପାଣି—ମା ଯେ ମୂର୍ଚ୍ଛାଗଲେ !

ଦଶ ।—ହା ରାମ !—(ମୂର୍ଚ୍ଛାଗତ ।)

ସୁମି ।—(ହଠାତ୍ ଉଠି ଦଉଡ଼ି ଯାଇ କନିକ ପରିଚାରିକା ସହିତ ପାଣି ନେଇ ପ୍ରବେଶ ଓ କ୍ରମେ କ୍ରମେ ସୁମନ୍ତ୍ର ସହିତ ରାଜା ଓ ରାଣୀଙ୍କର ମୂର୍ଚ୍ଛାପନୋଦନ ।)

[ ସୁନନ୍ଦାର ପ୍ରବେଶ ।

ସୁନ ।—(ଏକସ୍ଥାନରେ ଦୂରେ ବସିଯାଇ ଲୋତକ ପୋଛି ଗୀତ ।)

ରାଗ ଶଙ୍କରାଭରଣ—ତାଳ ଝୁଲା ଓ ପଦପଟ୍ଟ ।

ଶ୍ରୀରାମ ! ଆସି କର ଦର୍ଶନ ॥
ତ ଶୋକେ ଜନକ ତେଜେ ଜୀବନ । ଘୋଷା ।
ସତୀସାଧ୍ୱୀ ତବ କୌଶଲ୍ୟା ମାତା—
ହରାଏ ଚେତନ ପାଇ କି ବ୍ୟଥା । ୧ ।
କି ଶୋକ ସହି ସେ ସୁମିତ୍ରାରାଣୀ ।
ସେବା କରେ ତାଙ୍କୁ ଦିବାରଜନୀ । ୨ ।
ପୁର ନରନାରୀ ଅଯୋଧ୍ୟାଲୋକେ
ଆହା କରୁଛନ୍ତି ସର୍ବଦା ଶୋକେ । ୩ ।
କାହା କଥା ଅବା କହିବି କିହ
ଗଳି ଗଳି ଝରି ଯାଉଛି ଦେହ । ୪ ।

ସଙ୍ଗରେ ଯେ ନିଥି ଯାଇଛ ବନ—
ଝୁରି ଝୁରି ତାଙ୍କୁ ଦଶା ଦଶମ । * ।

ଦଶ ।—ହାୟ ! ଯେ ମଧୁର ସଙ୍ଗୀତ ଏକାଳେ କର୍ଣ୍ଣ ମନ ପରିତୃପ୍ତ କରୁଥିଲା—ଏବେ ତାହା ଶୁଣିବା ମୋତେ ବିଷପରି ଲାଗୁଛି ! ପ୍ରିୟପୁତ୍ର ରାମଚନ୍ଦ୍ର ନିକଟରେ ଥାଇଁ ସର୍ବ ବିଷୟରେ ମୋପାଇଁ ଅମୃତ ଢାଳୁଥିଲେ—ସେ ଚାଲି ଗଲେ—ଅମୃତର ପ୍ରସ୍ରବ ଶୁଖିଗଲା ! ଆହା—ସୂତ ! ସୁଖସେବୀ ରାମଚନ୍ଦ୍ର ଏତେବେଳେ କ'ଣ ଖାଇବେ ?—କେଉଁ ବୃକ୍ଷମୂଳରେ ଆଶ୍ରୟ ନେଇ ରାତ୍ରି ଯାପନ କରିବେ ? ସୁମନ୍ତ୍ର ! ଯେ କେବେ ଦୁଃଖ ପାଇ ନାହିଁ, ଯେ ଚିରକାଳ ଉତ୍କୃଷ୍ଟ ଶେଯରେ ଶୋଇ ଆସିଲେ ସେ କିପରି ଅନାଥ ପ୍ରାୟ ଭୂଇଁରେ ଶୋଇ କଷ୍ଟ ସହିବେ ? ଯାହାଙ୍କୁ ବାହାରିଲେ ରଥୀ ପଦାତି କୁଞ୍ଜରମାନେ ଯାହାଙ୍କର ଅନୁଗମନ କରୁଥିଲେ ସେ କିପରି ନିର୍ଜନ ଅରଣ୍ୟରେ ଏକାକୀ ପାଦଚାରରେ ଗମନ କରିବେ ? ଆହା ! ସେ ଦୁଇ ରାଜପୁତ୍ର ବିଦେହରାଜଦୁହିତା ସୀତା ସହିତରେ କିପରି ଅଜଗର, କୃଷ୍ଣସର୍ପ ଓ ମୃଗଗଣସେବିତ ଅରଣ୍ୟରେ ବାସ କରିବେ ? ସୁମନ୍ତ୍ର ! ସେମାନେ ରଥରୁ ଓହ୍ଲାଇ କିପରି ତପସ୍ୱିନୀ ସୁକୁମାରୀ ସୀତା ସହିତରେ ପାଦଚାରରେ ଗମନ କଲେ ! ସୂତ ! ତୁମ୍ଭେ ରଥରେ ସେମାନଙ୍କୁ ନେଇଗଲ—ମୁଁ ପଛରେ ଅନାଇ ରହିଥିଲି—କ୍ରମେ କ୍ରମେ ରଥଚକ୍ର, ରଥ, ରଥଧ୍ୱଜ ଓ ଧୂଳିପଟଳ ଅଦୃଶ୍ୟ ହେବାରୁ ଅଦୃଷ୍ଟ ଆଦରି ଫେରି ଆସିଲି—ତୁମ୍ଭେ ସେମାନଙ୍କୁ ମନ୍ଦରପ୍ରଦେଶବାସୀ ଅଶ୍ୱିନୀକୁମାରଦ୍ୱୟ ପରି ବନରେ ପଶିବାର ଦେଖିଛ—ତେଣୁ ତୁମ୍ଭେ ସଫଳମନୋରଥ ହୋଇଛ । ସୁମନ୍ତ୍ର ! ବନରେ ପ୍ରବେଶ କରି ରାମ, ଲକ୍ଷ୍ମଣ ଓ ସୀତା କଅଣ କହିଲେ—ସେ କିପରି ବସିଲେ, କିପରି ଖାଇଲେ, କିପରି ଶୋଇଲେ ମୋତେ ସବୁ କହ, ସାଧୁସମାଗମଦ୍ୱାରା ଯଯାତି ଜୀବନଧାରଣ କଲା ପ୍ରାୟ ମୁଁ ତଦ୍ୱାରା ଜୀବନ ଧାରଣ କରି ପାରିବି ।

ସୁମନ୍ତ୍ର ।—( ସ୍ୱଗତ ଦୀର୍ଘନିଶ୍ୱାସ ତ୍ୟାଗ କରି ) ଯାହା ସ୍ମରଣ କଲା ବେଳକୁ କାନ୍ଦ ମାଡ଼ୁଛି ତାହା ମୋତେ କହିବାକୁ ପଡ଼ିବ—ହେଉ ! ( ପ୍ରକାଶ୍ୟେ ) ମହାରାଜ ! ଏତେ କଷ୍ଟ ପାଇ କି ସେ ବାହାରିବ ଭୁଲିଛନ୍ତି—କେବଳ ଲୋକଙ୍କପାଇଁ କେତେ କଥା ଯେ ମୋତେ ଧରି ଧରି କହିଛନ୍ତି ତାହା ଅନ୍ୟ କେତେ ମୁଁ ସ୍ମରଣ କରି କହିବି । ଧର୍ମପାଳନୋଦ୍ୟତ ରଘୁନନ୍ଦନ ରାମଚନ୍ଦ୍ର ବଦ୍ଧାଞ୍ଜଳି ହୋଇ ଶମ୍ଭୁ ଚରଣୋଦ୍ଦେଶ୍ୟରେ ପ୍ରଣାମ କରି ମୋତେ କହିଲେ

"ସାରଥେ ! ତୁମ୍ଭେ ମୋ ନାମ କରି ଅଗ୍ରେ ମସ୍ତକଦ୍ୱାରା ବନ୍ଦନୀୟଚରଣ ମହାତ୍ମା ବଶିଷ୍ଠଦେବ ପିତାଙ୍କ ଚରଣ ବନ୍ଦନା କରିବ । ପରେ ସମସ୍ତ ବିମାତା-ମାନଙ୍କୁ ମୋର ସମୁଚିତ ପ୍ରଣାମ ଓ କୁଶଳସମାଚାର ଜଣାଇ ଦେବ ଆଉ ମାତାଙ୍କୁ ମୋର ଅଭିବାଦନ, କୁଶଳ ଓ ଧର୍ମ ବିଷୟରେ ଅପ୍ରମାଦକଥା ନିବେ-ଦନ କରି କହିବ 'ଆପଣ ନିୟତ ଧର୍ମାନୁଷ୍ଠାନରେ ବ୍ୟାପୃତା ହେଉନ୍ତୁ । ଯଥାସମୟରେ ଅଗ୍ନିର ଆରାଧନା କରି ଅନବରତ ଦେବତାପ୍ରାୟ ସ୍ୱାମିର ଚରଣସେବା କରନ୍ତୁ, ଅଭିମାନ ଓ ଅପମାନ ପରିତ୍ୟାଗ କରି ସମସ୍ତ ସପତ୍ନୀମାନଙ୍କପ୍ରତି ସାଧୁବ୍ୟବହାର କରନ୍ତୁ ଓ ଆର୍ଯ୍ୟା ମଧ୍ୟମା-ମାଙ୍କପ୍ରତି ରାଜାଙ୍କୁ ଅନୁରକ୍ତ କରାଇ ଦେଉନ୍ତୁ । ଅପିଚ ବୟୋଜ୍ୟେଷ୍ଠ ନ ହୋଇ ସୁଦ୍ଧା ବେଳେ ବେଳେ କେହି କେହି ରାଜା ହୋଇଥାନ୍ତି ଏହି ରାଜଧର୍ମ ସ୍ମରଣ କରି ଆପଣ କୁମାର ଭରତପ୍ରତି ରାଜତୁଲ୍ୟ ବ୍ୟବହାର କରନ୍ତୁ ।" ପରେ କହିଲେ "ଭରତଙ୍କୁ ମୋର ବାକ୍ୟାନୁସାରେ ମୋର କୁଶଳବାର୍ତ୍ତା କହି ସମସ୍ତ ମାତାମାନଙ୍କପ୍ରତି ଯଥାଯଥ ବ୍ୟବହାର କରିବା କାରଣ କହି ଦେବ—ଆଉ କହିବ ଯେ 'ତୁମ୍ଭେ ଯୌବରାଜ୍ୟସ୍ଥ ହୋଇ ସାମ୍ରାଜ୍ୟସ୍ଥ ପିତାଙ୍କୁ ରକ୍ଷାକର । ତାଙ୍କର ପରମାୟୁ ପ୍ରାୟ ଶେଷ ହୋଇ ଆସିଛି, ସୁତରାଂ ତାଙ୍କ ବିରୋଧୀ ନ ହୋଇ ବରଂ ତାଙ୍କ ଆଦେଶାନୁସାରେ ଚଳି ଯୌବରାଜ୍ୟ ପରିଦର୍ଶନ କରି ଜୀବନ ଧାରଣ କର ।" ଏହୁଁ ଉତ୍ତାରୁ ସେହି ମହାବାହୁ ମହାଯଶା କମଳଲୋଚନ ରାମଚନ୍ଦ୍ର ଅନେକ ବିଳମ୍ବ କରି ମୋତେ କହିଲେ "ପୁତ୍ରବତ୍ସଳା ମଧ୍ୟମ ଜନନୀପ୍ରତି ତୁମ୍ଭେ ଆତ୍ମଜନନୀପ୍ରାୟ ନିୟତ ଦୃଷ୍ଟି ରଖିବ ।" ଅନନ୍ତର ଲକ୍ଷ୍ମଣ ଅତ୍ୟନ୍ତ କ୍ରୋଧାନ୍ୱିତ ହୋଇ ଦୀର୍ଘନିଶ୍ୱାସ ପରିତ୍ୟାଗ କରୁ କରୁ କହିଲେ "ଏହି ରାଜପୁତ୍ର ରାଜ ରାମ କି ଅପରାଧରେ ନିର୍ବାସିତ ହେଲେ ? ରାଜା ମହିଷୀ ମାର କ୍ଷୁଦ୍ର ଆଦେଶ-ପାଳନରେ ପ୍ରତିଜ୍ଞା କରି ଆମ୍ଭମାନଙ୍କର ପୀଡ଼ାଦାୟକ ରାମବନବାସସ୍ୱରୂପ ଯେ କାର୍ଯ୍ୟ କରିଛନ୍ତି ତାହା ତାଙ୍କର କାର୍ଯ୍ୟ କି ଅକାର୍ଯ୍ୟ ? ମହିଷୀ ମାର ଲୋଭବଶରୁ ହେଉ ଅଥବା ବରଦାନ କରିଥିବା କାରଣରୁ ହେଉ ରାମବନବାସନ କାର୍ଯ୍ୟ ସର୍ବପ୍ରକାରରେ କୁକାର୍ଯ୍ୟ ହୋଇଛି । ମୁଁ ତ ତାଙ୍କୁ ନିର୍ବାସନ କରିବାର କୌଣସି କାରଣ ଦେଖୁ ନାହିଁ; ମୋତେ ଜଣାଯାଏ ରାଜା ଐଶ୍ୱର୍ଯ୍ୟନିବନ୍ଧନ ଯଥେଚ୍ଛାଚାରିତାରୁ ତାହା କରିଛନ୍ତି । ସେ ବୁଦ୍ଧି-ଲାଘବ ବଶରୁ ବିବେଚନା ନ କରି ଯେ ରଘୁନନ୍ଦନ ରାମଚନ୍ଦ୍ରଙ୍କୁ ନିର୍ବା-ସିତ କଲେ ତାଙ୍କର ସେହି ଲୋକବିରୁଦ୍ଧ କାର୍ଯ୍ୟ ଅବଶ୍ୟ ଅପ୍ରଶଂସାଜନକ

ହେବ । ମୁଁ ତ ମହାରାଜାଙ୍କୁ ପିତୃବତ୍ ମାନ୍ୟ କରିବାର କିଛି କାରଣ ଦେଖୁ ନାହିଁ । ରାଘବ ରାମଚନ୍ଦ୍ର ମୋର ଗୁରୁ, ଭର୍ତ୍ତା, ବନ୍ଧୁ ଓ ପିତାପ୍ରାୟ ମାନନୀୟ । ଧାର୍ମିକ ସର୍ବଲୋକାଭିରାମ ଶ୍ରୀ ରାମଚନ୍ଦ୍ର ହୃତାନସ୍ଥାୟୀ ହେବାରୁ ସମସ୍ତ ଲୋକର ପ୍ରିୟ ହୋଇଛନ୍ତି—ତେଣୁ ତାଙ୍କୁ ବନବାସିତ କରି ପିତା କପରି ଲୋକସମସ୍ତର ଅନୁରାଗଭାଜନ ହେବେ ଆଉ ତଦ୍ୱାରା ସମସ୍ତ ଲୋକ ସହିତରେ ବିରୋଧ ଉତ୍ପାଦନ କରି କି ପ୍ରକାରେ ରାଜପଦରେ ସ୍ଥିର ହୋଇ ରହିବେ ?" ମହାରାଜ ! ଆଉ ସେହି ନରପରାଧିନୀ ରାଜନନ୍ଦିନୀ ଯଶସ୍ୱିନୀ ଜାନକୀଦେବୀ ପୂର୍ବେତ କେବେ ଏରୂପ କଷ୍ଟ ପାଇ ନ ଥିଲେ —ସେ ଭୂତାବିଷ୍ଟା ଯୋଷାପ୍ରାୟ ବିସ୍ମିତା ହୋଇ ଦୀର୍ଘନିଶ୍ୱାସ ପରିତ୍ୟାଗ କରି ତୁପ ହୋଇଥିଲେ । ଏ କଥା ଶୁଣୁ ଶୁଣୁ ଦୁଃଖ ହେବାରୁ କାନ୍ଦ ପକାଇଲେ ମାତ୍ର ମୋତେ କିଛି କହିଲେ ନାହିଁ । ତତ୍ପରେ ସ୍ୱାମୀଙ୍କି ଚାଲି-ଯିବାର ଦେଖି ମୁହଁ ଶୁଖାଇ ସହସା ବାଷ୍ପ ମୋଚନ କରି ଥରେ ରଥ-ଆଡ଼କୁ ଓ ଥରେ ମୋ ଆଡ଼କୁ କ୍ରମାଗତ ଅନାଉ ଥିଲେ ॥

କୌଶ ।—( ଅଶ୍ରୁମୋଚନ ପୂର୍ବକ ) ସୁମନ୍ତ ! ଏହା ଶୁଣି କି ମୁଁ ଛାତି ଧରି ପାରିବି !

ସୁମନ୍ତ ।—ଯେତେବେଳେ ରାମଚନ୍ଦ୍ର ଅରଣ୍ୟାଭିମୁଖରେ ପ୍ରସ୍ଥିତ ହେଲେ, ମୁଁ ଆଉ କ କରିବି, ରଥ ବାହୁଡ଼ାଇ ଅଶ୍ୱପରିଚାଳନା କଲି । ଅଶ୍ୱମାନେ ସୁଦ୍ଧା ବାହୁଡ଼ି ଆସିବାରେ ପ୍ରବୃତ୍ତ ନ ହୋଇ ଉଷ୍ଣଅଶ୍ରୁ ତ୍ୟାଗ କଲେ ॥ ପରେ ମୁଁ କୃତାଞ୍ଜଳି ହୋଇ ସେହି ଦୁଇ ରାଜନନ୍ଦନଙ୍କୁ ପ୍ରଣାମ କରି ସେ-ମାନଙ୍କ ବିରହଦୁଃଖ ମନରେ ପୂରାଇ ରଥାରୋହଣପୂର୍ବକ ଗୁହସହ-ତରେ ଶୃଙ୍ଗବେରପୁରକୁ ଯାଇ ଯେବେ ରାମଚନ୍ଦ୍ର ମୋତେ ଡାକନ୍ତି ଏହି ଆଶାରେ ସେଠାରେ କତିଦିନ ବାସ କଲି । ମାତ୍ର ସେ ଆଶା ନିଷ୍ଫଳ ହେବାରୁ ମୁଁ ଅବଶେଷରେ ନିବୃତ୍ତ ହୋଇ ଆସୁ ଆସୁ ଦେଖିଲି ଯେ ଆମ୍ଭଙ୍କ ରାଜ୍ୟର ବୃକ୍ଷମାନେ ମହା ବିପଦାକ୍ରାନ୍ତ ହୋଇ ଅଙ୍କୁରିତ ପଲ୍ଲବ, କୋରକ ଓ ପୁଷ୍ପ ସହିତରେ ମ୍ଲାନ ହୋଇଛନ୍ତି; ନଦୀ ସରୋବର ଓ ପୁଷ୍କରିଣୀର ଜଳ ତପ୍ତ ହୋଇଛି ଆଉ ବନ ଉପବନର ବୃକ୍ଷ ଲତା ଝାଉଁଳି ଯାଇଛି; ହିଂସ୍ର ଆଉ ଅନ୍ୟାନ୍ୟ ଜନ୍ତୁମାନେ ଯିବା ଆସିବା ନ କରିବାରୁ ସେହି ବନସବୁ ରାମଶୋକାଭିଭୂତ ହୋଇ ମୌନ ହେଲାପ୍ରାୟ ଦେଖା ଯାଉଛି; ନଦୀସମସ୍ତ ଦକ୍ଷିତଭାବକସମନ୍ୱିତା ଓ ଅପ୍ରସ୍ଫୁଟିତକମଲଧାରିଣୀ ଏବଂ ପୁଷ୍କରିଣୀସବୁ ଶୁଷ୍କପଦ୍ମଶାଳିନୀ ଓ ବିଷଣ୍ଣମୀନବିହଙ୍ଗମସମନ୍ୱିତା ହୋଇ ଯାଉଛି; ସ୍ଥଳଜ ଓ ଜଳଜ ପୁଷ୍ପମାନେ ଗନ୍ଧହୀନ ହୋଇ ଯିବାରୁ ଆଉ

ପୁନ ତାହାଙ୍କ ବସନ୍ତବିହଗସମାକୁଳ ଉଦ୍ୟାନସବୁ ନୀରବ ହେବାରୁ
ଅରମଣୀୟ ଆଉ ଉପବନସବୁ ଅମନୋହର ହୋଇଛି । ଅଯୋଧ୍ୟା-
ପ୍ରବେଶ କାଳରେ ମୋତେ କେହି ଅଭିନନ୍ଦନ ନ କଲେ ତାହିଁ ପରନ୍ତୁ
ସମସ୍ତେ ରାମଚନ୍ଦ୍ରଙ୍କୁ ନ ଦେଖି ମୁହୁର୍ମୁହୁ ଦୀର୍ଘନିଃଶ୍ୱାସ ପରିତ୍ୟାଗ କଲେ ।
ମହାରାଜ ! ରାଜମାର୍ଗସ୍ଥିତ ଲୋକମାନେ ଦୂରରୁ ରାମଶୂନ୍ୟ ରଥ ଦେଖି
ମୁଖ ଫେରାଇଲେ । ହାହାକାର କରି କାମିନୀମାନେ ରାମଦର୍ଶନାର୍ଥ ଉତ୍କ-
ଣ୍ଠିତ ହୋଇ ହର୍ମ୍ୟ, ପ୍ରାସାଦ ଓ ବିମାନ ଉପରେ ଉଠି ଶୂନ୍ୟରଥ ଦେଖି
ନିତାନ୍ତ ବାଷ୍ପଜଳରେ ଆପ୍ଳୁତ ସୁକମଳ ଲୋଚନକୁ ବାଷ୍ପପରିପ୍ଳୁତ କରି
ଅବ୍ୟକ୍ତଭାବରେ ପରସ୍ପରପ୍ରତି ଅବଲୋକନ କଲେ । ମିତ୍ର, ଅମିତ୍ର, ଉଦା-
ସୀନ—ସମସ୍ତ ଅଯୋଧ୍ୟାବାସୀ ଏକ ଭାବରେ ଦୁଃଖରେ ଅଭିଭୂତ ହୋଇ-
ଯାଇଛନ୍ତି ଏବଂ ସମସ୍ତ ଅଯୋଧ୍ୟାନଗରୀ ରାମବିବାସନ-ଶୋକରେ ଆତୁର
ଓ ଆନନ୍ଦବର୍ଜିତା ହୋଇ ପ୍ରାଣୀମାନଙ୍କର ହାହାକାର ଓ ଦୀର୍ଘନିଶ୍ୱାସ-
ରବରେ ପ୍ରତିଧ୍ୱନିତ ହେଉଛି ।

ଦଶ ।—( ଅତି କାତରସ୍ୱରରେ ) ମୁଁ ପାପକର୍ମାଭିରତ ପାପସହୋଦରା
ଦେବି କୈକେୟୀକର୍ତ୍ତୃକ ଉତ୍ତେଜିତ ହୋଇ ମନ୍ତ୍ରଣାଦକ୍ଷ ବୃଦ୍ଧ ଅମାତ୍ୟମାନଙ୍କ
ସଙ୍ଗରେ କର୍ତ୍ତବ୍ୟାକର୍ତ୍ତବ୍ୟ ବିଷୟରେ ଯାହା ବିଚାର ନ କଲି ! ମୁଁ
ଅବଜ୍ଞାବଶରୁ ବେଦଜ୍ଞ ବ୍ରାହ୍ମଣ, ଅମାତ୍ୟ ଓ ବାନ୍ଧବମାନଙ୍କ ସହିତରେ
ମନ୍ତ୍ରଣା ନ କରି ସ୍ତ୍ରୀବଶରୁ ସହସା ଏରୂପ କାର୍ଯ୍ୟ କରିଛି ! ସାରଥେ !
ଜାହବା ତ ବୋଲିବୁଁ, ଭବିତବ୍ୟବଶରୁ ଆମ୍ଭମାନଙ୍କ ବଂଶବିନାଶ-
ନିମିତ୍ତ ଏହି ମହତ୍ ବ୍ୟସନ ଆପେ ଆସି ପହୁଞ୍ଚିଛି ! ଯାହା ହେଉ ରାମବିର-
ହରେ ମୋର ପ୍ରାଣ ବାହାରିଯିବାକୁ ଉପସ୍ଥିତ । ସୂତ ! ମୁଁ ଯେବେ ତୁମ୍ଭର
କିଛି ଉପକାର କରିଥାଏଁ ମୋତେ ତୁମ୍ଭେ ସତ୍ୱର ରାମଙ୍କ ନିକଟକୁ ନେଇ
ଚାଲ—ମୁଁ ରାମବିନା ମୁହୂର୍ତ୍ତେ ଜୀବନ ଧରି ପାରିବି ନାହିଁ । ଯେବେ
ମୋର ଆଜ୍ଞା ଏତେବେଳପର୍ଯ୍ୟନ୍ତ ପ୍ରମାଣ ଥାଏ ତୁମ୍ଭେ ରାମଚନ୍ଦ୍ରଙ୍କୁ
ଫେରାଇ ନଗରେ ଆଣ,—ନାହିଁ ଯଦି ସେ ବହୁଦୂର ବାହାରି ଯାଇଥାନ୍ତି,
ତେବେ ମୋତେ ରଥରେ ନେଇଯାଇ ତାଙ୍କୁ ଦେଖାଅ !—ହାୟ !
କାହିଁ ସେହି କୁନ୍ଦକୋରକୋପମଦନ୍ତଶାଳୀ ମହାଧନୁର୍ଦ୍ଧାରୀ ଲକ୍ଷ୍ମଣାଗ୍ରଜ
ରାମ ! ହାୟ ! ହାୟ ! କଲ୍ୟାଣେ କଲ୍ୟାଣେ ଏତେକାଳ ବଞ୍ଚିଲେ ସିନା
ତାଙ୍କୁ ସୀତାସହିତରେ ଦେଖିବାକୁ ପାଇବି—ମୁଁ ଯେଉଁ ଏତେଦୂରର ଦୁର୍ଦ୍ଦଶା-
ପନ୍ନ ହୋଇ ରାମଙ୍କୁ ଦେଖିବାକୁ ପାଉ ନାହିଁ ଏଥିରୁ ବଳି ଅଧିକ ଦୁଃଖ-

ହାୟକି ଆଉକି ହୋଇପାରେ ?—ହା ରାମ ! ହା ଲକ୍ଷ୍ମଣ ! ହା ଜନକ-ନନ୍ଦିନି ଜାନକି ! ମୁଁ ଯେ ଅନାଥପ୍ରାୟ ଏଠି ଦୁଃଖରେ ମରୁଛି ଏହାକି ତୁମ୍ଭେମାନେ ଜାଣିପାରୁଛ !!

ସୁମି ।—( ମହାରାଜଙ୍କର ଅଶ୍ରୁ ପୋଛିଦେଇ ) ଆପଣ ଶାନ୍ତ ହୁଅନ୍ତୁ ।

ଦଶ ।—ଦେବୀ କୌଶଲ୍ୟେ ! ମୁଁ କି ଆଉ ବଞ୍ଚିବି ? ଯାହାର ରାମଶୋକ ମହାବେଗ, ସୀତାବିରହ ଅନ୍ତସୀମା, ଦୀର୍ଘନିଶ୍ୱାସ ଉର୍ମିଯୁକ୍ତ ଆବର୍ତ୍ତ, ନୟନବାରି ଜଳ, ହସ୍ତ ମତ୍ସ୍ୟ, ରୋଦନ ତୁମୁଳଧ୍ୱନି, କେଶ ଶୈବାଳ, କୈକେୟୀ ବାଡ଼ବାନଳ, କୁବ୍‌ଜାବାକ୍ୟ ମହାଗ୍ରାହ, ଆଉ ଯାହାହେତୁ ରାମ ବନବାସିତ ହେଲେ ସେହି ନୃଶଂସସ୍ୱଭାବା କୈକେୟୀର ବର ବେଳାଭୂମି—ଏପରି ଭୀଷଣ ଶୋକସାଗରରେ ମୁଁ ରାମ ବାଛରେକେ ନିମଗ୍ନ ହୋଇଛି !—କୌଶଲ୍ୟେ ! ମୁଁ ଜୀବନ ଥାଉଁ ଥାଉଁ ଏ ସାଗର ଯେ ଉତ୍ତୀର୍ଣ୍ଣ ହୋଇ ପାରିବି ଏହା ମୋତେ ବୋଧ ନାହିଁ । ( ବହୁତ ଉଠି ଦୀର୍ଘନିଶ୍ୱାସ ତ୍ୟାଗ କରି ଉଚ୍ଚସ୍ୱରେ ) ମୁଁ ବର୍ତ୍ତମାନ ରଘୁନନ୍ଦନ ରାମଙ୍କୁ ଲକ୍ଷ୍ମଣସହିତରେ ଦେଖିବାକୁ ଇଚ୍ଛା କରି ଯେ ଦେଖିବାକୁ ପାଉ ନାହିଁ ଏହା ନିତାନ୍ତ ଅନୁଚିତ—ନିତାନ୍ତ ଅନୁଚିତ !! (ଶଯ୍ୟାରେ ପତନ ଓ ମୂର୍ଚ୍ଛା ।)

ସୁମି ।—ଏକି ମହାରାଜ !—ମୂର୍ଚ୍ଛା ଗଲେ !—( ଜଳସେଚନପୂର୍ବକ ଦଶରଥର ମୂର୍ଚ୍ଛାପନୋଦନ କରଣ । )

କୌଶ ।—( ସଖେଦନସ୍ୱରେ ) ସୁମନ୍ତ୍ର ! ନାକୁହନ୍ତି ରାମ, ଲକ୍ଷ୍ମଣ, ସୀତାଙ୍କୁ ବିନା ଛଳେସ୍ପୃହା ବଞ୍ଚିବାକୁ ମୋର ଅଭିଳାଷ ନାହିଁ । ସେମାନେ ଯେଉଁଠାରେ ଅଛନ୍ତି ମୋତେ ସେଠିକି ନେଇ ଚାଲ । ମୁଁ ଯେବେ ତାଙ୍କର ଅନୁଗାମିନୀ ହୋଇ ନ ପାରିଲି ତେବେ ଯମଘରକୁ ଯିବି । ତୁମ୍ଭେ ଶୀଘ୍ର ରଥ ଲେଉଟାଇ ଆମ୍ଭରେ ଦଣ୍ଡକାରଣ୍ୟକୁ ନେଇଚାଲ ।

ସୁମନ୍ତ୍ର ।—( ବାଷ୍ପଗଦ୍‌ଗଦସ୍ୱରେ ) ମାତଃ ! ଆପଣ ଶୋକ, ଖେଦ ଓ ଦୁଃଖଜନିତା ଚିତ୍ତବ୍ୟାକୁଳତା ତ୍ୟାଗ କରନ୍ତୁ । ରଘୁନନ୍ଦନ ରାମଚନ୍ଦ୍ର ବନକ୍ଲେଶରେ ବନରେ ବାସ କରିବେ । ଜିତେନ୍ଦ୍ରିୟ ଧର୍ମଜ୍ଞ ଲକ୍ଷ୍ମଣ ବନକ୍ଲେଶରେ ବନରେ ଥାଇ ତାଙ୍କର ଚରଣ ଆରାଧନା କରି ପାରଲୌକିକ ସୁଖ ସଞ୍ଚୟ କରୁଛନ୍ତି !—ଆଉ ଜନକଦୁହିତା ସୀତାଦେବୀ—ସେହି ସମସ୍ତ ଚିତ୍ତବୃତ୍ତି ରାମଚନ୍ଦ୍ରଙ୍କଠାରେ ଅର୍ପଣ କରି ନିର୍ଭୟଚିତ୍ତରେ ନନ୍ଦନବନକୁ ପରିପ୍ରାପ୍ତ ମଣି ପ୍ରୀତିଲାଭ କରୁଛନ୍ତି ! ବନବାସହେତୁ ତାଙ୍କର କଣ୍ଟମାତ୍ର ବୈବର୍ଣ୍ୟଭାବ ଲକ୍ଷିତ ହେଉ ନାହିଁ—ଅଧିକ କି ବୋଲିବି ଯେ

ପ୍ରବାସ-ଯୋଗ୍ୟ ହୋଇଛନ୍ତି । ପୂର୍ବେ ନଗରର ଉପବନକୁ ଯାଇ ତାଙ୍କର ଯେରୂପେ ଆନନ୍ଦଲାଭ କରୁଥିଲେ ଏବେ ବନକୁ ଯାଇ ସେ ସେହିରୂପ ଆନନ୍ଦ ଲାଭ କରୁଛନ୍ତି । ସେହି ପୂର୍ଣ୍ଣଚନ୍ଦ୍ରାନନା ସୀତାଦେବୀ ନିର୍ଜନବନରେ ଥାଇ ଅଙ୍ଗନଚତ୍ୱରରେ ବାଳମହଲାପ୍ରାୟ ପ୍ରୀତା ଅଛନ୍ତି—ରାମଚନ୍ଦ୍ରଙ୍କ ସାନ୍ନିଧ୍ୟବଶରୁ ନବ ନବ ସୁଷମା ତାଙ୍କୁ ଅତି ରମଣୀୟ ହୋଇଛି । ଫଳକଥା ରାମଚନ୍ଦ୍ର ବ୍ୟତିରେକେ ସୀତାଦେବୀଙ୍କି ଅଯୋଧ୍ୟାନଗରୀ ନିବିଡ଼ବନପ୍ରାୟ ଜଣାଯାଇ ଥାନ୍ତା ! ଗ୍ରାମ, ନଗର, ବଟବୃକ୍ଷ ଓ ନଦୀଗତି ଇତ୍ୟାଦି ଅପରିଚିତ ବସ୍ତୁ ଦେଖି ତାହାଙ୍କର ଚକ୍ଷୁ ରାମଚନ୍ଦ୍ର ବା ଲକ୍ଷ୍ମଣଙ୍କ ପର୍ଯ୍ୟନ୍ତ ଛାତ ହୋଇ ମହାସୁଖରେ ଯାଉଛନ୍ତି । ମୋର ଏହା ମନରେ ଲାଗି ରହିଛି ଆଉ ସୀତାଦେବୀ ଯେ ସହସା କୈକେୟୀସମ୍ବନ୍ଧରେ କ କଥା କହିଥିଲେ ତା ମୋର ମନେ ପଡ଼ୁ ନାହିଁ ।—ଆପଣ ଶୋକ ପରିତ୍ୟାଗ କରନ୍ତୁ । ଚନ୍ଦ୍ରପ୍ରକାଶାଳିନୀ, ମଧୁରଭାଷିଣୀ, ବିଦେହରାଜନନ୍ଦିନୀ ସୀତାଦେବୀଙ୍କ ପ୍ରତି ପଥପରିଶ୍ରମ, ଅତପତାପ, ବାୟୁବେଗ ଏବା ସମ୍ଭ୍ରମହାନ ବିକୃତା ହେବାର ନୁହେ । ତାଙ୍କର ସେହି ଚନ୍ଦ୍ର ପ୍ରାୟ ପ୍ରିୟଦର୍ଶନ ଅତି ପଦ୍ମପ୍ରାୟ କମନୀୟ ବଦନମଣ୍ଡଳ କାହିଁରେ ମ୍ଳାନ ହେବାର ନୁହଇ । ତାଙ୍କ ଚରଣଦ୍ୱୟ ସ୍ୱର୍ଣ୍ଣବର୍ଣ୍ଣ ଅଳକ୍ତରସରଞ୍ଜିତ ହେଲା ପ୍ରାୟ ଦ୍ୟୁତିଶାଳୀ ହେବାରୁ ବର୍ତ୍ତମାନ ଅଳକ୍ତରାଗବର୍ଜିତ ହୋଇ ସୁଦ୍ଧା ପଦ୍ମକେଶରସଦୃଶ ପ୍ରଭା ବିସ୍ତାର କରୁଛି । ସେ ରାମଚନ୍ଦ୍ରଙ୍କ ବାହୁବଳ ଆଶ୍ରୟ କରିଥିବାରୁ ଅରଣ୍ୟରେ ସିଂହ, ବ୍ୟାଘ୍ର, ହାତୀ ଦେଖି ସୁଦ୍ଧା ଡ଼ରୁ ନାହାନ୍ତି । ଆପଣ ସେମାନଙ୍କ-ନିମିତ୍ତ, ମହାରାଜଙ୍କ ନିମିତ୍ତ କ ଆପଣା ପାଇଁ ଶୋକ କରନ୍ତୁ ନାହିଁ । ସେମାନେ ଶୋକପରିତ୍ୟାଗପୂର୍ବକ ମହର୍ଷିଗଣସେବିତ ପଥ ଅବଲମ୍ବନ କରି ପ୍ରହୃଷ୍ଟମାନସରେ ବନ୍ୟଫଳଦ୍ୱାରା ଜୀବନଯାତ୍ରା ନିର୍ବାହ କରି ମହାରାଜଙ୍କର ଶୁଭ ଆଦେଶ ପାଳୁଛନ୍ତି ।

କୌଶ ।—( ଦୀର୍ଘନିଶ୍ୱାସ ତ୍ୟାଗକରି ) ହା ରାମ ! ହା ପୁତ୍ର ! ହା ଲକ୍ଷ୍ମଣ ! ହା ସୀତେ !

ଦଶ ।—( ଦୀର୍ଘନିଶ୍ୱାସ ତ୍ୟାଗକରି ) ସୁମନ୍ତ୍ର ! ମୋର ହୃଦୟ ଫାଟିଯାଉଛି ! ଅହା ମୋର ରାମ କିରୂପରେ ବଞ୍ଚି ରହିଥିବ ! – ସୁମନ୍ତ୍ର ମୋତେ ଆଉ ଥରେ କହ ସେ କ କହିଛନ୍ତି—ଅହା କେଡ଼େ ବୁଦ୍ଧିମାନ୍ !—

ସୁମ ।—( ସ୍ୱଗତ ) ରାଜା ପାଗଳ ହୋଇ ଗଲେଣି—ମୋତେ ତ ଏହାଙ୍କ ଦଶା ଭଲ ଲାଗୁ ନାହିଁ !—( ପ୍ରକାଶ୍ୟେ ) ମହାରାଜ ! ମୁଁ ଯେତେବେଳେ ଗଙ୍ଗାନଦୀ-

କୌଶ।—ଆପଣ ଏପରି ଅସ୍ଥିର କାହିଁକି ହେଉଛନ୍ତି—

ସୁମି।—ମହାରାଜ ! ଅସ୍ଥିର ହେଉଛନ୍ତି—ଏପରି କାହିଁକି ହେଉଛନ୍ତି !

ଦଶ।—ଆଉ କି ଅଛି—ମୋର ସେହି ଅଭିଶାପ—ସେ ଅଭିଶାପ କଥା ସ୍ମରଣ ହୋଇଛି—ମୁଁ ଅନ୍ଧ—ଆଉ ବଞ୍ଚିବି—ନାହିଁ !—ମୋର ଶେଷ ହୋଇ ଆସିଲା !—କୌଶଲ୍ୟେ ! ଅର୍ଦ୍ଧରାତ୍ର ଶେଷ ହେଲା କି ନା ?

କୌଶ।—(କାନ୍ଦି କାନ୍ଦି) ଏ କଣ ମହାରାଜ ! ଆପଣ ଏମନ୍ତ କାହିଁକି ହେଉଛନ୍ତି।—ଅର୍ଦ୍ଧରାତ୍ର କଟି ଗଲାଣି—

ଦଶ।—(କ୍ଷୀଣସ୍ୱରରେ) ଆଉ ନା—ହା ରାମ—ହା କୌଶଲ୍ୟେ ! ହା ଭରଥ ରାଘବ ସୁମିତ୍ରେ !—ହା ରାମ !—ହା ଲକ୍ଷ୍ମଣ !—ହା ସୀତେ !—ହା ରାମ !—ରାମ ! ରାମ ! (ଦେହ ମୋଡ଼ି ପଡ଼ି ଯିବାର ଓ ମୃତ୍ୟୁ।)

କୌଶ।—(କାନ୍ଦି ଉଠି) ଏକି ! ଏକି ! ଛାଡ଼ି ଚାଲିଗଲ ! (ପତନ ଓ ମୂର୍ଚ୍ଛା।)

ସୁମି।—(ଉଚ୍ଚ କ୍ରନ୍ଦନସ୍ୱରରେ) ଛାଡ଼ିଗଲ—ଆମ୍ଭେ କାହାର ହେବୁଁ (ପତନ ଓ ମୂର୍ଚ୍ଛା।)

ସୁକ।—(ଉଚ୍ଚ ରୋଳରେ ହାତ ଟେକି) ସର୍ବନାଶ ! ସର୍ବନାଶ !

ଯ ବ ନି କା ପ ତ ନ।

(ନେପଥ୍ୟେ ଗୀତ।)

ରାଗିଣୀ ଭୈରବୀ—ତାଳ ଝମ୍ପା।

କି ହେଲା କି ହେଲା ହେଲା ସର୍ବନାଶ।
ଛାଡ଼ିଗଲେ ମହାରାଜ ପିଙ୍ଗି ଭବମାୟାପାଶ। ଘୋଷା।

କାହିଁ ପୁତ୍ର-ଅଭିଷେକ କାହିଁ ହେଲା ପୁତ୍ରଶୋକ,
ଅତୁଲ ଐଶ୍ୱର୍ଯ୍ୟ ଛାଡ଼ି କରି ଗଲେ କାଳାବାସ। ୧।
ପ୍ରିୟତମା ବାକ୍ୟ-ବାଣେ ପୀଡ଼ିଲା ପ୍ରିୟ-ପରାଣ,
ପ୍ରେମମୟୀ ପ୍ରେମ ସେବି ମୃତ୍ୟୁପାଶେ ପ୍ରେମଦାସ। ୨।
ଯେ ଭବାବେ ଲୋକେ ଭୋଳ ବଢ଼ିଲେ ଫଳେ କୁଫଳ—
ପ୍ରିୟା ପ୍ରିୟ କାର୍ଯ୍ୟ ଛାଡ଼ି କରେ ଶେଷେ ପ୍ରାଣନାଶ। ୩।
ଆହା ତୁଚ୍ଛ ତୁଏ ଦହ, ଶୋକ କେ ପାରେ ସହ !—
ଇଚ୍ଛାମୟ ଇଚ୍ଛା ଭବ ଫଳେ ଲୋକେ ଜ୍ଞାନବାସ ! ୪।

ସମାପ୍ତଂ।

———